ମାଧ୍ୟମିକ ଶିକ୍ଷାବୋର୍ଡ଼ଦ୍ୱାରା ଅତିରିକ୍ତ ସାହିତ୍ୟରୂପେ ନିର୍ବାଚିତ

ଏ ଯୁଗର

# ଅମର ପ୍ରସଙ୍ଗ

## ଦ୍ୱିତୀୟ ଭାଗ

( ସପ୍ତମଶ୍ରେଣୀ ନିମନ୍ତେ )

ଅତିରିକ୍ତ ସାହିତ୍ୟ


ଲେଖକ

ଶ୍ରୀ ରାମପ୍ରସାଦ ସିଂହ



ଶ୍ରୀ ଅନନ୍ତ ମିଶ୍ର

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର, କଟକ—୨

ନୂତନ ମୁଦ୍ରଣ

୧୯୭୮

# ସୂଚୀ

# ରବୀନ୍ଦ୍ରନାଥ

ପୂର୍ବକାଳରେ ଆମ ଦେଶରେ ଜଣେ ବଡ଼ କବି ଥିଲେ । ତାଙ୍କ ନାମ ବ୍ୟାସ । ସେ ମହାଭାରତ ଲେଖିଥିଲେ । ମହାଭାରତ ମହାକାବ୍ୟ । କଥା ଅଛି 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ ।' ଯାହା ମହାଭାରତରେ ନାହିଁ ତାହା ଭାରତରେ ନାହିଁ । ଏଡ଼େ ବଡ଼ କାବ୍ୟ ପୃଥିବୀର ଅନ୍ୟ କୌଣସି ଦେଶରେ ନାହିଁ । ଏଡ଼େ ବଡ଼ କବି ପୃଥିବୀର ଅନ୍ୟ କେଉଁଠାରେ ଜନ୍ମ ହୋଇ ନାହାନ୍ତି । ବ୍ୟାସ ମହର୍ଷି; ସେ ଆଶ୍ରମରେ ରହୁଥିଲେ, ତପସ୍ୟା କରୁଥିଲେ । ମହାଭାରତ ତାଙ୍କ ତପସ୍ୟାର ଫଳ ।

ଏହିପରି ଏ ଦେଶରେ ପୂର୍ବକାଳରୁ କାଳିଦାସ, ମାଘ, ଭାରବି, ଭବଭୂତି ଆଦି ଅନେକ କବି ଜନ୍ମଗ୍ରହଣ କରି ଅନେକ ଗ୍ରନ୍ଥ ଲେଖି ଯାଇଛନ୍ତି । ଆଜି ମଧ୍ୟ ସେଗୁଡ଼ିକ ପଢ଼ି ଲୋକେ ଶିକ୍ଷା ପାଉଛନ୍ତି; ନିଜର ଜୀବନକୁ ଭଲକରି ଗଢ଼ିବା, ଭଲ ମଣିଷ ହେବାର ସାମଗ୍ରୀ ପାଉଛନ୍ତି ।

ଏ ଯୁଗରେ ଋଷି ନାହାନ୍ତି; ଋଷି ଆଶ୍ରମ ନାହିଁ । ସମସ୍ତ ବଦଳି ଯାଇଛି; ତଥାପି ରବୀନ୍ଦ୍ରନାଥ ଠାକୁରଙ୍କ ପରି କବି ଏ ଦେଶରେ ଜନ୍ମଗ୍ରହଣ କରିଥିଲେ ।

କଲିକତା ଗୋଟିଏ ବଡ଼ ସହର । ସାହେବମାନେ ଏ ସହର ସ୍ଥାପନ କରିଥିଲେ । ବେପାର ବାଣିଜ୍ୟର ସୁବିଧା ଥିବାରୁ ଏ ସହର କ୍ରମେ କ୍ରମେ ବଢ଼ିଲା । ଇଂରେଜ ଅମଳରେ ୧୯୧୧ ପର୍ଯ୍ୟନ୍ତ କଲିକତା ଭାରତବର୍ଷର ରାଜଧାନୀ ଥିଲା । ଲକ୍ଷ ଲକ୍ଷ ଲୋକଙ୍କର ଗହଳି; ସବୁବେଳେ ଦୋକାନ, ବଜାରରେ ଚହଳ ଲାଗିଥାଏ । ନିକଟରେ ପାହାଡ଼, ପର୍ବତ, ଗଛପତ୍ର, ଝରଣା ବା ଶସ୍ୟକ୍ଷେତ୍ର ନାହିଁ । ସହରଟା ଦେଖିଲେ ପ୍ରକୃତିଦେବୀ କାରାଗାରରେ ପଡ଼ି ହନ୍ତସନ୍ତ ହେଉଥିଲା ପରି ଜଣାପଡ଼େ । ତାହାରି ଭିତରେ ଏ ଯୁଗର ଶ୍ରେଷ୍ଠ କବି ରବୀନ୍ଦ୍ରନାଥଙ୍କର ଜନ୍ମ ।

କଲିକତା ଭିତରେ "ଯୋଡ଼ାଶାଙ୍କୋ" ଗୋଟିଏ ଅତି ଗହଳିଆ ଅଞ୍ଚଳ । ଗଙ୍ଗାଠାରୁ ଅଳ୍ପ ଦୂରରେ ଥିଲେ ମଧ୍ୟ ନଈର କୌଣସି ଦୃଶ୍ୟ ଏ ଅଞ୍ଚଳକୁ ଦେଖାଯାଏ ନାହିଁ । ଚାରିଆଡ଼େ ବଡ଼ ବଡ଼ କୋଠାବାଡ଼ି, ଉପରେ ଆକାଶ ଛଡ଼ା କୌଣସି ଖୋଲାଯାଗା ଆଖିରେ ପଡ଼େ ନାହିଁ । କଲିକତାର ସେହି ବଜାରରେ ଠାକୁର ପରିବାରରେ ୧୮୬୧ ଖ୍ରୀଷ୍ଟାବ୍ଦ ମଇ ମାସ ୭ ତାରିଖରେ ରବୀନ୍ଦ୍ରନାଥ ଜନ୍ମଗ୍ରହଣ କରିଥିଲେ । ଠାକୁର-ବଂଶ ବଡ଼ ଜମିଦାର । ଆମ ଓଡ଼ିଶାରେ ମଧ୍ୟ ତାଙ୍କର ଜମିଦାରୀ ଥିଲା । ସେମାନେ ବଡ଼ ଧନୀ ଥିଲେ । ସେମାନଙ୍କ ମଧ୍ୟରେ ବଡ଼ ବଡ଼ ଶିକ୍ଷିତ ଲୋକ ମଧ୍ୟ ଥିଲେ । ସେ ବଂଶରେ ଅନେକ ଲେଖକ, କବି ଚିତ୍ରକର ଓ ସଙ୍ଗୀତଜ୍ଞ ଥିଲେ । ଭାରତରେ ଅନେକଗୁଡ଼ିଏ ପ୍ରାଦେଶିକ ଭାଷା ଅଛି । ସେମାନଙ୍କ ଭିତରେ ବଙ୍ଗଳା ଗୋଟିଏ ବଡ଼ ଭାଷା । ଏହାକୁ ବଡ଼ କରିବାରେ ଠାକୁର ପରିବାରର ଅନେକ ଲୋକ କାମ କରିଥିଲେ ।

ରବୀନ୍ଦ୍ରନାଥଙ୍କ ପିତାମହଙ୍କ ନାମ ରାଜା ଦ୍ୱାରକାନାଥ ଠାକୁର । ସେ ଧନୀ ଥିଲେ, ଦାନୀ ମଧ୍ୟ ଥିଲେ । ସେ ଜମିଦାରୀରୁ ଲକ୍ଷ ଲକ୍ଷ ଟଙ୍କା ପାଉଥିଲେ, ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରୁଥିଲେ । ବ୍ରିଟିଶ ସରକାର ଓ ସାଧାରଣ ଲୋକେ ତାଙ୍କୁ ସମ୍ମାନ କରୁଥିଲେ ।



ରବୀନ୍ଦ୍ରନାଥଙ୍କର ପିତାଙ୍କ ନାମ ଦେବେନ୍ଦ୍ରନାଥ ଠାକୁର । ସେ ଅତି ଧର୍ମପରାୟଣ ଓ ଜ୍ଞାନୀଲୋକ ଥିଲେ । ଲୋକେ ତାଙ୍କୁ ମହର୍ଷି ବୋଲି କହୁଥିଲେ । ସେ ମଧ୍ୟ ବଡ଼ ଦାନୀ ଥିଲେ । ଦେବେନ୍ଦ୍ରନାଥଙ୍କର ସାତଟି ପୁଅ । ରବୀନ୍ଦ୍ରନାଥ ସେମାନଙ୍କ ଭିତରୁ ଜଣେ ।

ସେ କାଳର ଲୋକେ କହୁଥିଲେ, ଠାକୁର ବଂଶରେ ଜନ୍ମ ହେଲେ ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିବାକୁ, ଗୀତ ଓ କବିତା ପଢ଼ିବାକୁ ଭଲପାଇବ । ରବୀନ୍ଦ୍ରନାଥଙ୍କର ଜୀବନରେ ଏ କଥା ସତ ହୋଇଥିଲା । ତାଙ୍କର ବାଲ୍ୟକାଳ ସୁଖରେ କଟି ନ ଥିଲା । ସାନ-ବେଳେ ସେ ମାଆଙ୍କୁ ହରାଇଥିଲେ । ଜମିଦାରୀ କାମ ବୁଝିବା ପାଇଁ ପିତା ଦେବେନ୍ଦ୍ରନାଥ ଅନେକ ସମୟ ଘରେ ରହୁ ନ ଥିଲେ । ପିଲାଟିକୁ ଦେଖାଶୁଣା କରିବା ଭାର ଦାସୀ ଚାକରଙ୍କ ଉପରେ ଥିଲା । ସେମାନେ ତାଙ୍କୁ ବୁଲାବୁଲି କରିବାପାଇଁ ମଧ୍ୟ ଛାଡ଼ୁ ନ ଥିଲେ । ଚାକରଟି ଭୂଇଁରେ ଗୋଟିଏ ଗାର ଟାଣି ଦେଉଥିଲା । ସେ ଗାର ବାହାରକୁ ଯିବାପାଇଁ ତାଙ୍କୁ ମନା ଥିଲା ।

ଯୋଡ଼ାଶାଙ୍କୋରେ ଥିବା ଠାକୁର ବଂଶର ଘର ରାଜପ୍ରାସାଦ ପରି ବଡ଼ । ସେଥିରେ ବଗିଚା, ପୋଖରୀ ଓ ବଡ ବଡ଼ ଦୋତାଲା ଘର ଥିଲା । ଆଜି ମଧ୍ୟ ସେଗୁଡ଼ିକ ସେପରି ରହିଛି । ପିଲାଦିନୁ ରବୀନ୍ଦ୍ରନାଥ ବୁଦ୍ଧିମାନ୍ । ଘର ବାହାରକୁ ନ ଯାଇ ମଧ୍ୟ ସେ ବହୁତ କଥା ଲେଖିଥିଲେ ଓ ଦେଖି ଦେଖି ସବୁ ଶିଖିଥିଲେ ।

ଥରେ ରବୀନ୍ଦ୍ରନାଥ ତାଙ୍କ ପିଣ୍ଡାରେ ଗୋଟିଏ କଣରେ କୋଳିମଞ୍ଜିଟିଏ ପୋତିଥିଲେ । ସେ ନିତ ସେଥିରେ ପାଣି ଦିଅନ୍ତି । ଏଥିରୁ ବଡ଼ ଗଛଟାଏ ଉଠିବ ବୋଲି ସେ ଭାବିଥିଲେ । ଗଛତଳେ ତଳେ କ'ଣ ଅଛି ଏ କଥା ତାଙ୍କ ମନରେ ଉଠିଲା । ସେ ବଡ଼ ଗାତଟାଏ ଖୋଳିଲେ । ଗାତ ଖୋଳୁ ଖୋଳୁ ଭାବିଲେ ଏହିପରି ତଳକୁ ତଳକୁ ଗାତ ଖୋଳିଲେ ସେ ପୃଥିବୀ ତଳେ ଯାଇ ପହଞ୍ଚିଯିବେ ।

ତାଙ୍କ କୋଠା ଉପରେ ମେଘଗୁଡ଼ାକ ଉଡ଼ିଯାନ୍ତି । ସେଗୁଡ଼ାକ ଧରି ପକାଇବେ ବୋଲି ସେ ଅନେକ ଥର ଭାବନ୍ତି । ଥରେ ସେ ଖଣ୍ଡେ ପରେ ଆଉ ଖଣ୍ଡେ କରି ଅନେକଗୁଡ଼ାଏ ବାଡ଼ ବାନ୍ଧି ମେଘକୁ ଛୁଇଁବା ପାଇଁ ଉଦ୍ୟମ କରିଥିଲେ ।

ଏହିପରି ଭାବରେ ସାଙ୍ଗସାଥି ନ ଥାଇ, ନିଜେ ଏକୁଟିଆ ମନେ ମନେ ସବୁକଥା ଚିନ୍ତାକରି ତାଙ୍କର ପିଲାଦିନ କଟିଲା । ଏଡ଼େ ବଡ଼ଘର, ଦାସୀ,ଚାକର ପୂରି ରହିଥିଲେ ; ତଥାପି ରବୀନ୍ଦ୍ରନାଥ ଭାବୁଥିଲେ ଯେ, ସେ ପୋଷା ଚଢ଼େଇ ପରି ଗୋଟିଏ ବଡ଼ ପିଞ୍ଜରା ଭିତରେ ବନ୍ଦୀ ହୋଇ ରହିଛନ୍ତି ।

ପିଲାଦିନେ ରବୀନ୍ଦ୍ରନାଥ ସ୍କୁଲକୁ ଯାଉଥିଲେ, କିନ୍ତୁ ସେଠାର ପଢ଼ାପଢ଼ି ତାଙ୍କୁ ଭଲ ଲାଗୁ ନ ଥିଲା । ପାଠ ନ ପଢ଼ିଲେ ସ୍କୁଲରେ ପିଲାଙ୍କୁ ଦଣ୍ଡ ଦିଆଯାଉଥିଲା । କେତେବେଳେ ସେମାନଙ୍କୁ ବେଞ୍ଚ ଉପରେ, କେତେବେଳେ ଖରାରେ ଠିଆକରି ଦିଆଯାଉଥିଲା । ଏସବୁ ତାଙ୍କୁ ଭଲ ଲାଗୁ ନ ଥିଲା ।

ରବୀନ୍ଦ୍ରନାଥଙ୍କ ମାତୃଭାଷା ବଙ୍ଗଳା । ପିଲାଦିନୁ ସେ ଭଲ ବଙ୍ଗଳା ଲେଖିପାରୁଥିଲେ । ତଥାପି ସ୍କୁଲର ଜଣେ ଶିକ୍ଷକ ତାଙ୍କୁ ସୁଖ ପାଉ ନ ଥିଲେ । ପରୀକ୍ଷାବେଳେ ରବୀନ୍ଦ୍ରନାଥ ବଙ୍ଗଳା ଭାଷାରେ ଖୁବ୍ ଭଲ ଉତ୍ତର ଦେଉଥିଲେ । କେଉଁଠାରୁ ଦେଖି କପି କରି ପିଲାଟା ଏପରି ଲେଖିଛି ବୋଲି ଥରେ ସେ ଶିକ୍ଷକ ମନେ କଲେ । ଆଉ ଥରେ ତାଙ୍କୁ ପରୀକ୍ଷା କରାଗଲା । ସେଥିରେ ମଧ୍ୟ ସେ ଭଲ ଉତ୍ତର ଲେଖିଲେ । ତଥାପି ଶିକ୍ଷକ ଜଣକ ରବୀନ୍ଦ୍ରନାଥଙ୍କୁ ବୁଦ୍ଧିଆ ପିଲା ବୋଲି ମନେକଲେ ନାହିଁ ।

ରବୀନ୍ଦ୍ରନାଥଙ୍କ ପିତା ଯେତେବେଳେ ଦେଖିଲେ, ପିଲା ସ୍କୁଲକୁ ଯିବାପାଇଁ ଭଲ ପାଉନାହିଁ, ସେତେବେଳେ ଘରେ ଶିକ୍ଷକ ରଖି

ପୁଅଙ୍କୁ ପଢ଼ାଇଲେ । ସେ ତାଙ୍କ ପାଖରେ ଅଙ୍କ, ଇତିହାସ, ବିଜ୍ଞାନ ଆଦି ପଢ଼ୁଥିଲେ । ଏହାଛଡ଼ା ତାଙ୍କୁ କୁସ୍ତି କସରତ ଶିଖାଇବା ପାଇଁ ଜଣେ ପହ୍ଲିଲମାନ ଥିଲା । ସଙ୍ଗୀତ ଶିକ୍ଷା ଦେବା ପାଇଁ ପ୍ରତି ରବିବାର ଦିନ ଜଣେ ଶିକ୍ଷକ ଆସୁଥିଲେ । ଖୁବ୍ ଭୋରରୁ ଉଠିବା ରବୀନ୍ଦ୍ର-ନାଥଙ୍କ ଅଭ୍ୟାସ । ଶିକ୍ଷକ ଆସିଲା ବେଳକୁ ସେ ନିଜେ ନିଜର ପଢ଼ାପଢ଼ି ସାରି ପଢ଼ାଘରକୁ ଯାଉଥିଲେ ।

ପିଲାଦିନୁ ଦେଶପ୍ରତି ରବୀନ୍ଦ୍ରନାଥଙ୍କର ଅନୁରାଗ ଥିଲା । ତାଙ୍କର ବଡ଼ଭାଇ ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେଇଥିଲେ । ତାଙ୍କ ଘରେ ସ୍ୱଦେଶୀ ଦଳର ଲୋକ ରୁଣ୍ଡ ହେଉଥିଲେ । ସେମାନଙ୍କ ସାଙ୍ଗରେ ମିଶି କଥାବାର୍ତ୍ତା କରି ରବୀନ୍ଦ୍ରନାଥ ପିଲାଦିନୁ ଦେଶପ୍ରତି ଆଗ୍ରହୀ ହୋଇଥିଲେ । ବର୍ଷକୁ ବର୍ଷ ସ୍ୱଦେଶୀ ଦଳର ଲୋକ ଗୋଟିଏ ପ୍ରଦର୍ଶନୀ ଆରମ୍ଭ କରୁଥିଲେ । ଏ ପ୍ରଦର୍ଶନୀରେ ଦେଶରେ ତିଆରି ସବୁ ଜିନିଷ ପ୍ରଦର୍ଶିତ ହେଉଥିଲା । ଏଠାରେ କୁସ୍ତି କସରତ ଓ ସଙ୍ଗୀତ ଚର୍ଚ୍ଚା ମଧ୍ୟ ହେଉଥିଲା । ଏଥିରେ ଯୋଗ ଦେବାପାଇଁ ରବୀନ୍ଦ୍ରନାଥ ସୁଖ ପାଉଥିଲେ ।

ଠାକୁର ପରିବାର ପକ୍ଷରୁ 'ଭାରତୀ' ନାମକ ଗୋଟିଏ ମାସିକ ପତ୍ରିକା ବାହାରୁଥିଲା । ଏଥିରେ ସେମାନେ ଗଳ୍ପ, କବିତା, ପ୍ରବନ୍ଧ ଆଦି ଲେଖୁଥିଲେ, ଚିତ୍ର ମଧ୍ୟ ଅଙ୍କନ କରୁଥିଲେ । ପରିବାରର ଅନ୍ୟାନ୍ୟ ଲୋକଙ୍କ ପରି ଏହି ପତ୍ରିକା ପାଇଁ ସେ ଲେଖିବା ଆରମ୍ଭ କଲେ । ସେତେବେଳେ ତାଙ୍କର ବୟସ ଷୋଳବର୍ଷ ।

ମହର୍ଷି ଦେବେନ୍ଦ୍ରନାଥ ଠାକୁର କଲିକତାରେ ବେଶିଦିନ ରହୁ ନ ଥିଲେ । ଯେଥିପାଇଁ ତାଙ୍କ ସହିତ ତାଙ୍କ ପୁଅଝିଅମାନେ ବେଶି ସମୟ ରହିପାରୁ ନ ଥିଲେ । କଲିକତାକୁ ଆସିଲେ ମଧ୍ୟ

ପିଲମାନେ ତାଙ୍କ ପାଖକୁ ଯାଉ ନ ଥିଲେ । ସେ ଘରେ ଥିଲାବେଳେ ପିଲମାନେ ଗୋଳମାଳ କରିବେ ନାହିଁ ବୋଲି ମନା ହେଉଥିଲା । ତାହା ଫଳରେ କେତେ ବର୍ଷ ପର୍ଯ୍ୟନ୍ତ ରବୀନ୍ଦ୍ରନାଥ ତାଙ୍କ ପିତାଙ୍କୁ ଦେଖି ପାରି ନ ଥିଲେ । ସେ ମଧ୍ୟ ପିତାଙ୍କୁ ଭାରି ଡରୁଥିଲେ ।

ରବୀନ୍ଦ୍ରନାଥ ସେତେବେଳେ ୧୧ । ୧୨ ବର୍ଷର ପିଲା । ହିମାଳୟ ଦେଖିବାପାଇଁ ତାଙ୍କ ପିତା ତାଙ୍କୁ ସାଙ୍ଗରେ ନେଇଗଲେ । ତାହା ପୂର୍ବରୁ ସେ କେବେ ରେଳଗାଡ଼ିରେ ଚଢ଼ି ନ ଥିଲେ;ବାହାରର ଗଛ ପତ୍ର, ବିଲ ଓ ପଡ଼ିଆ ଆଦି କିଛି ଦେଖି ନ ଥିଲେ । ପିତାପୁତ୍ର ଦୁହେଁ ଭାରତର ବହୁ ଅଞ୍ଚଳ ବୁଲି ହିମାଳୟ ଦେଖିବାକୁ ଗଲେ । ସେଠାରେ ହିମାଳୟର ଦୃଶ୍ୟ ଦେଖି ରବୀନ୍ଦ୍ରନାଥ ମୁଗ୍ଧ ହୋଇଗଲେ । ସେ ସାରାଜୀବନ ଏ ବିରାଟ ପର୍ବତମାଳାର ସୌନ୍ଦର୍ଯ୍ୟ ଭୁଲି ପାରି ନ ଥିଲେ ।

ରବୀନ୍ଦ୍ରନାଥ ପୁଣି ଥରେ ବିଦ୍ୟାଳୟରେ ନାମ ଲେଖାଇଲେ, କିନ୍ତୁ ଏଥର ମଧ୍ୟ ତାଙ୍କୁ ସେଠାରେ ଭଲ ଲାଗିଲା ନାହିଁ; ତେଣୁ ରବୀନ୍ଦ୍ରନାଥଙ୍କ ଶିକ୍ଷା ପାଇଁ ତାଙ୍କୁ ବିଲାତ ପଠାଇବାକୁ ହେବ ବୋଲି ତାଙ୍କ ପିତା ସ୍ଥିର କଲେ । ଇଂଲଣ୍ଡରେ ଲଣ୍ଡନ ନିକଟରେ ଥିବା ଗୋଟିଏ ବିଦ୍ୟାଳୟରେ ସେ ଶିକ୍ଷାଲାଭ କରିଥିଲେ । ଏଠାରେ ସେ ଇଂରାଜୀ ସାହିତ୍ୟ ଓ ସଙ୍ଗୀତ ବିଷୟରେ ଯଥେଷ୍ଟ ଜ୍ଞାନ ଅର୍ଜନ କଲେ ।

ଇଂଲଣ୍ଡରୁ ଫେରି ସେ ନାଟକ ଲେଖିବା ଆରମ୍ଭ କଲେ । ଏଥିରେ ଥିବା ଗୀତଗୁଡ଼ିକର ସ୍ୱର ସେ ନିଜେ ରଚନା କରୁଥିଲେ । ଏହି ସମୟରୁ ସେ ଅନେକ ଗଦ୍ୟ, କବିତା, ଉପନ୍ୟାସ, ପ୍ରବନ୍ଧ, ନାଟକ ଆଦି ଲେଖିଲେ । କ୍ରମେ କ୍ରମେ ତାଙ୍କର ଯଶ ପୃଥିବୀର ଚାରିଆଡ଼େ ବ୍ୟାପି ଯାଇଥିଲା । ସେ ପୃଥିବୀର ଶ୍ରେଷ୍ଠ ସାହିତ୍ୟିକ ବୋଲି

ନୋବେଲ ପୁରସ୍କାର ମଧ୍ୟ ପାଇଲେ । ଏହାଫଳରେ ସଭ୍ୟ ଦୁନିଆର ସମସ୍ତେ ତାଙ୍କୁ ଜାଣିପାରିଲେ । ସେ ମଧ୍ୟ ପୃଥିବୀର ନାନା ଦେଶ ଭ୍ରମଣ କରିଥିଲେ ।

କବି ସ୍ୱଦେଶକୁ ମନପ୍ରାଣ ଦେଇ ଭଲ ପାଉଥିଲେ । ଯେତେବେଳେ ଦେଶରେ କୌଣସି ଅଭାବ ଅସୁବିଧା ଘଟୁଥିଲା, କବି ଦେଶବାସୀଙ୍କ ସହାୟତା ପାଇଁ ବାହାରୁଥିଲେ । ସେତେବେଳେ ଥିବା ବ୍ରିଟିସ୍ ସରକାର ତାଙ୍କର କର୍ମତତ୍ପରତା ଦେଖି ତାଙ୍କୁ ନାଇଟ୍ ଉପାଧି ଦେଇଥିଲେ । ୧୯୧୯ରେ ଯେତେବେଳେ ପଞ୍ଜାବ ଅତ୍ୟାଚାର ଘଟିଲା ସେତେବେଳେ ସେ ଏ ଉପାଧି ସରକାରଙ୍କୁ ଫେରାଇ-ଦେଲେ ।

୧୯୪୧ରେ ସେ ଭୀଷଣ ରୋଗଗ୍ରସ୍ତ ହୋଇ ଅଗଷ୍ଟ ମାସ ୭ ତାରିଖରେ ପ୍ରାଣତ୍ୟାଗ କଲେ ।

ସେ ଏକାଧାରରେ କବି, ଲେଖକ, ଦେଶପ୍ରେମୀ ଓ ମାନବ-ସମାଜର ବନ୍ଧୁ ଥିଲେ । ବୋଲପୁରଠାରେ ସେ ଯେଉଁ 'ଶାନ୍ତି-ନିକେତନ' ପ୍ରତିଷ୍ଠା କରି ଯାଇଛନ୍ତି, ତାହା ଚିରକାଳ ମନୁଷ୍ୟ ଜାତି ଭିତରେ ଏକତା ପ୍ରଚାର କରୁଥିବ । ଭାରତରେ ଏହା ଗୋଟିଏ ପ୍ରଧାନ ଶିକ୍ଷା ଅନୁଷ୍ଠାନ । ଏଠାରେ ପୃଥିବୀର ନାନା ଦେଶର ଛାତ୍ର-ଛାତ୍ରୀମାନେ ଶିକ୍ଷାଲାଭ କରୁଛନ୍ତି ।

ରବୀନ୍ଦ୍ରନାଥ 'ଜନଗଣ-ମନ ଅଧିନାୟକ' ବୋଲି ଯେଉଁ ଗୀତ ରଚନା କରିଥିଲେ ତାହା ସ୍ୱାଧୀନ ଭାରତର ରାଷ୍ଟ୍ରୀୟ ସଙ୍ଗୀତ ରୂପେ ଗୃହୀତ ହୋଇଅଛି । ଏହି ସଙ୍ଗୀତ ଦେଶର କୋଟି କୋଟି ନରନାରୀଙ୍କ କଣ୍ଠରେ ଧ୍ୱନିତ ହେଉଅଛି ।

———

# ସ୍ୱାମୀ ବିବେକାନନ୍ଦ

ସେତେବେଳେ ଊନବିଂଶ ଶହ ଶତାବ୍ଦୀର ମଧ୍ୟଭାଗ । ବ୍ରିଟିଶ ରାଜତ୍ୱ ଭାରତରେ କ୍ରମେ କ୍ରମେ ଦୃଢ଼ ହେଉଥିଲା । ଏ ଦେଶରେ ଧର୍ମର ପ୍ରଚାର କରି ଲୋକଙ୍କୁ ଆଲୋକ ଦେବାପାଇଁ ଇଂଲଣ୍ଡରେ ଦୁଇତିନୋଟି ଧର୍ମପ୍ରଚାର ଅନୁଷ୍ଠାନ ବସିଥିଲା । ହଜାର ହଜାର ଖ୍ରୀଷ୍ଟିୟାନ ପାଦ୍ରୀ ଭାରତର ଏ ମୁଣ୍ଡ ସେମୁଣ୍ଡ ବୁଲି ପିତୁଳା ପୂଜା କରୁଥିବା ଲୋକମାନଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କରିବା କାମରେ ଲାଗିଥାନ୍ତି । ଏ ପୁରାଣଭୂମି ଭାରତ ଗୋଟାଏ ଅସଭ୍ୟ ଦେଶ ; ସ୍ୱାମୀ ମରିଗଲେ ସ୍ତ୍ରୀକୁ ନିଆଁରେ ପୋଡ଼ି ମାରି ଦିଆଯାଏ—ଏଠାରେ ସାପ ବେଙ୍ଗଙ୍କୁ ମଧ୍ୟ ପୂଜା କରାଯାଏ – ଏ କଥା ସେ ସମୟରେ ସମସ୍ତ ପାଶ୍ଚାତ୍ୟ ଦେଶରେ ପ୍ରଚାରିତ ହୋଇଥାଏ ।

ଏହି ସମୟରେ ଆମେରିକା ଦେଶର ଶିକାଗୋ ସହରରେ ଠୁଳ ହୋଇଥିବା ପାଶ୍ଚାତ୍ୟ ଦେଶର ବଡ଼ ବଡ଼ ଧର୍ମଯାଜକ ଓ ପଣ୍ଡିତଙ୍କ ଆଗରେ ଭାରତ ବର୍ଷର ଜଣେ ଯୁବକ ସନ୍ନ୍ୟାସୀ ବଜ୍ରଗମ୍ଭୀର ସ୍ୱରରେ ଘୋଷଣା କଲେ—"ଭାରତବର୍ଷର ହିନ୍ଦୁଧର୍ମ ଅତି ବିରାଟ । ପୃଥିବୀର ସବୁ ଧର୍ମ ଏହି ଧର୍ମରୁ ଜାତ ।"

ସମସ୍ତେ ତାଟକା ହୋଇଗଲେ । ସଭ୍ୟ ବୋଲିଜଥିବା ଦେଶମାନଙ୍କରେ ହାଲହ୍ଲଲ ପଡ଼ିଗଲା । ଗେରୁଆ ଲୁଗା ପିନ୍ଧିଥିବା ତରୁଣ ବର୍ଷ ବୟସର ଜଣେ ଭାରତବାସୀ ସାରା ପୃଥିବୀରେ ଚହଳ ପକାଇ ଦେଲେ । ଆମେରିକା ଓ ଇଂଲଣ୍ଡ ଦେଶର କେତେକ ଲୋକ ଏ ସନ୍ନ୍ୟାସୀଙ୍କ ପାଦତଳେ ଶିଷ୍ୟ ହୋଇ ବସିବାରେ ଗୌରବ ମନେ କରିଥିଲେ । ଏ ସନ୍ନ୍ୟାସୀଙ୍କ ନାମ ସ୍ୱାମୀ ବିବେକାନନ୍ଦ ।

ସେ ଊନବିଂଶ ଶତାବ୍ଦୀର ମଧ୍ୟଭାଗ । ଛଅ ବର୍ଷ ବ୍ୟବଧାନରେ ଦୁଇଜଣ ମହାପୁରୁଷ ଏ ଦେଶର ପୂର୍ବ ଓ ପଶ୍ଚିମ ଅଂଶରେ ଜନ୍ମଗ୍ରହଣ କରିଥିଲେ । ସ୍ୱାମୀ ବିବେକାନନ୍ଦ ବଙ୍ଗ ପ୍ରଦେଶର କଲିକତା ନଗରୀରେ ୧୮୬୩ ଖ୍ରୀଷ୍ଟାବ୍ଦ ଜାନୁଆରୀମାସ ୧୨ ତାରିଖରେ ଓ ମହାତ୍ମା ଗାନ୍ଧି ୧୮୬୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ୨ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ଏ ଦୁହିଁଙ୍କ ତପସ୍ୟା ଫଳରେ ଭାରତ ପୂର୍ବ ଗୌରବ ଫେରି ପାଇଛି ।

ପିଲାଦିନେ ସ୍ୱାମୀ ବିବେକାନନ୍ଦ ନରେନ୍ଦ୍ର ନାମରେ ପରିଚିତ ଥିଲେ । ସେ କଲିକତାରେ ପ୍ରସିଦ୍ଧ ଦତ୍ତ ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାମହ ଦୁର୍ଗାଚରଣ ଦତ୍ତ ଫାରସୀ ଓ ସଂସ୍କୃତ ଭାଷାରେ ଜଣେ ପଣ୍ଡିତ ଥିଲେ; କିନ୍ତୁ ପୁଅଟିଏ ଜନ୍ମ ହେବା ପରେ ୧୫ ବର୍ଷ ବୟସରେ ସେ ସନ୍ନ୍ୟାସ ବ୍ରତ ଅବଲମ୍ବନ କରି ନାନା ତୀର୍ଥକ୍ଷେତ୍ର ପର୍ଯ୍ୟଟନ କରିଥିଲେ । ତାଙ୍କ ପୁତ୍ର ବିଶ୍ୱନାଥ ଦତ୍ତ ମଧ୍ୟ ଜଣେ ଅସାମାନ୍ୟ ଲୋକ ଥିଲେ । ସେ ଇଂରାଜୀ ଓ ଫାରସୀ ଉଭୟ ଭାଷାରେ ପ୍ରବୀଣ ଥିଲେ । କଲିକତା ହାଇକୋର୍ଟରେ ଆଇନ ବ୍ୟବସାୟ କରି ସେ ବହୁତ ଟଙ୍କା

ରୋଜଗାର କରୁଥିଲେ । ବିଶ୍ୱନାଥଙ୍କ ସ୍ତ୍ରୀଙ୍କ ନାମ ଭୁବନେଶ୍ୱରୀ । ସେ ଭକ୍ତିମତୀ, ଦୟାମତୀ ଓ ବୁଦ୍ଧିମତୀ ମହିଳା ଥିଲେ । ସେ ପ୍ରତିଦିନ



ରାମାୟଣ, ମହାଭାରତ ପଢ଼ୁଥିଲେ । ସେ ମଧ୍ୟ ନିଜପୁଅ ନରେନ୍ଦ୍ରଙ୍କୁ ରାମାୟଣ ମହାଭାରତ କଥା କହୁଥିଲେ ଓ ଇଂରେଜୀ, ବଙ୍ଗଳା ଶିଖାଉଥିଲେ । ମାଆଙ୍କର ଏହି ଧର୍ମଶିକ୍ଷା ନରେନ୍ଦ୍ରନାଥଙ୍କୁ ଭବିଷ୍ୟତ ଜୀବନରେ ସ୍ୱାମୀ ବିବେକାନନ୍ଦ ରୂପେ ଗଠନ କରିଥିଲା ।

ପିଲାଦିନେ ନରେନ୍ଦ୍ରନାଥ ବଡ଼ ଚଞ୍ଚଳ ଥିଲେ । ଭୁବନେଶ୍ୱରୀ ଦିନେ ବିରକ୍ତ ହୋଇ କହିଲେ, "ପୁଅଟିଏ ହେଉ ବୋଲି ମୁଁ ମହାଦେବଙ୍କୁ ପ୍ରାର୍ଥନା କରିଥିଲି । ସେ ମୋତେ ତାଙ୍କ ସାଙ୍ଗୋପାଙ୍ଗ ଭୂତମାନଙ୍କ ଭିତରୁ ଗୋଟାକୁ ଦେଇଛନ୍ତି ।"

ପିଲାଦିନୁ ନରେନ୍ଦ୍ର ରାମାୟଣ, ମହାଭାରତ ଶୁଣିବାକୁ ସୁଖ ପାଉଥିଲେ । କୌଣସି ସ୍ଥାନରେ ରାମାୟଣ ବୋଲାହେବାର ଶୁଣିଲେ ସେ ସେଠାକୁ ଧାଇଁ ଯାଉଥିଲେ ଏବଂ ମନ ପ୍ରାଣ ଢାଳି ଶୁଣୁଥିଲେ । ରାମାୟଣ ଶୁଣୁ ଶୁଣୁ ସେ ସବୁକଥା ଭୁଲିଯାଉଥିଲେ । ରାମଚନ୍ଦ୍ରଙ୍କ ବୃତ୍ତାନ୍ତ ତାଙ୍କୁ ବିଶେଷ ଅନୁପ୍ରାଣିତ କରୁଥିଲା । ବଜାରରୁ ରାମଚନ୍ଦ୍ରଙ୍କର ଗୋଟିଏ ମୂର୍ତ୍ତି କିଣିଆଣି ସେ ପ୍ରତିଦିନ ତାକୁ ପୂଜା କରୁଥିଲେ ।

ପିଲାଦିନୁ ସେ ସାଧୁ ସନ୍ନ୍ୟାସୀମାନଙ୍କୁ ଭକ୍ତି କରୁଥିଲେ । ବାଟରେ କୌଣସି ବାବାଜୀ ବୈଷ୍ଣବ ଦେଖିଲେ ସେ ତାଙ୍କୁ ଘରକୁ ଡାକି ଆଣି ଖାଇବାକୁ ଦେଉଥିଲେ ; ଟଙ୍କା ପଇସା ବିଦାକି ଦେଉଥିଲେ । ପିଲାଦିନୁ ଧର୍ମଆଡ଼କୁ ତାଙ୍କର ମତି ଥିଲା । ଈଶ୍ୱରଙ୍କୁ ପ୍ରାର୍ଥନା କରୁ କରୁ ସେ ଅନେକ ସମୟରେ ସବୁ କଥା ଭୁଲି ଯାଉଥିଲେ ।

ଛଅ ବର୍ଷ ବୟସରେ ନରେନ୍ଦ୍ରନାଥ ପାଠ ପଢ଼ିବା ପାଇଁ ତାଙ୍କ ଘର ନିକଟରେ ଥିବା ଗୋଟିଏ ପ୍ରାଥମିକ ବିଦ୍ୟାଳୟକୁ ଯାଇଥିଲେ । ସେଠାରେ ସାଙ୍ଗପିଲାଙ୍କଠାରୁ ନାନାପ୍ରକାର କୁ-କଥା ଶିଖୁଥିବାର ଦେଖି ତାଙ୍କ ପିତା ଜଣେ ଶିକ୍ଷକ ରଖି ତାଙ୍କ ବିଦ୍ୟା-

ଶିକ୍ଷା ଦେଲେ । ପିଲାଦିନୁ ସେ ବଡ଼ ମେଧାବୀ ଥିଲେ । ଅଳ୍ପ ସମୟ ଭିତରେ ସେ ବହୁତ ପାଠ ପଢ଼ିଥିଲେ । ତାଙ୍କର ସ୍ମରଣ ଶକ୍ତି ଅତି ପ୍ରଖର । ପିଲାଦିନେ ସମୁଦାୟ ସଂସ୍କୃତ ବ୍ୟାକରଣକୁ ସେ ମୁହେଁ ମୁହେଁ କହିଯାଉଥିଲେ ।

ସାତବର୍ଷ ବୟସରେ ସେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପ୍ରତିଷ୍ଠିତ ମେଟ୍ରୋପଲିଟାନ୍ ସ୍କୁଲରେ ପଢ଼ା ଆରମ୍ଭ କଲେ । ସବୁ ଛାତ୍ରଙ୍କ ଭିତରେ ସେ ବୁଦ୍ଧିମାନ ବୋଲି ଅଳ୍ପ ସମୟ ଭିତରେ ଜଣା ପଡ଼ିଥିଲା ।

ନରେନ୍ଦ୍ରନାଥ ପିଲାଦିନୁ ମିଥ୍ୟା କଥା କହୁ ନ ଥିଲେ । ସାଇ-ପଡ଼ିଶା ଘରକୁ ଯାଇ ସେମାନଙ୍କର ସୁବିଧା ଅସୁବିଧା ବୁଝିବା ପାଇଁ ସେ ସବୁବେଳେ ବ୍ୟଗ୍ର ଥିଲେ । ନିଜେ ସବୁବେଳେ ହସୁଥିଲେ, ସାଙ୍ଗପିଲାଙ୍କୁ ମଧ୍ୟ ହସାଉଥିଲେ । ବହି, ଖବରକାଗଜ ପଢ଼ିବା ଓ ବକ୍ତୃତା ଶୁଣିବାକୁ ସେ ଭଲ ପାଉଥିଲେ ।

୧୮୭୭ରେ ତାଙ୍କ ପିତା ମଧ୍ୟପ୍ରଦେଶର ରାୟପୁରଠାରେ ଦୁଇବର୍ଷ କାଳ ରହିଥିଲେ । ସେଠାରେ ବଙ୍ଗଳା ସ୍କୁଲ ନ ଥିବାରୁ ତାଙ୍କର ଶିକ୍ଷା ବନ୍ଦ ହୋଇଗଲା । ତାଙ୍କ ଘରକୁ ଅନେକ ବିଦ୍ୱାନ୍-ଲୋକ ଆସୁଥିଲେ । ସେମାନଙ୍କ ସହିତ କଥାବାର୍ତ୍ତା କରି ସେ ଅନେକ ବିଷୟ ଶିଖି ପାରିଥିଲେ ।

କଲିକତାକୁ ଫେରି ସେ ପୁରୁଣା ବିଦ୍ୟାଳୟରେ ନାମ ଲେଖାଇ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏହି ସମୟରେ ସେ ଅନେକଗୁଡ଼ିଏ ବଙ୍ଗଳା ଓ ଇଂରାଜୀ ବହି ପଢ଼ିଥିଲେ ।

ତତ୍ପରେ ସେ କଲିକତା ପ୍ରେସିଡେନ୍‌ସି କଲେଜରେ ନାମ ଲେଖାଇଥିଲେ । ତାଙ୍କର ବୁଦ୍ଧିମତ୍ତା ଦେଖି ସମସ୍ତେ ମୁଗ୍‌ଧ ହୋଇ-ଥିଲେ । ଥରେ କଲେଜରେ ଜଣେ ଅଧ୍ୟାପକ କହିଥିଲେ, "ମୁଁ ପୃଥିବୀର ଅନେକ ଦେଶକୁ ଯାଇଛି, ଅନେକ ଛାତ୍ରଙ୍କୁ ଦେଖିଛି; କିନ୍ତୁ କେଉଁଠାରେ ନରେନ୍ଦ୍ର ପରି ମେଧାବୀ ଛାତ୍ର ଦେଖି ନାହିଁ । ପରବର୍ତ୍ତୀ କାଳରେ ସେ ଜଣେ ବଡ଼ ଲୋକ ହେବ, ଏଥିରେ ସନ୍ଦେହ ନାହିଁ ।"

କଲେଜରେ ସେ ତର୍କ ଓ ଦର୍ଶନଶାସ୍ତ୍ର ପଢ଼ିଲେ । ପିଲାଦିନୁ ଧର୍ମଆଡ଼କୁ ତାଙ୍କର ମନ ଥିଲା । ଦେବଦେବୀଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ମନୁଷ୍ୟ କଅଣ, ତାର ଜୀବନର ଉଦ୍ଦେଶ୍ୟ କ'ଣ ସେ କଥା ସେ ଗମ୍ଭୀର ଭାବରେ ଚିନ୍ତା କରୁଥିଲେ । ଅନେକ ସମୟରେ ସେ ବଡ ବଡ଼ ଇଂରେଜ ଲେଖକଙ୍କ ଲେଖା ପଢ଼ୁଥିଲେ । କୌଣସି ଜିନିଷର ଅସ୍ତିତ୍ୱ ଅଛି କି ନାହିଁ ତାହା ବିଶ୍ୱାସ କରିବା ପୂର୍ବରୁ ସେ ବିଷୟରେ ପ୍ରତ୍ୟକ୍ଷ ପ୍ରମାଣ ପାଇବାପାଇଁ ସେ ବରାବର ଇଚ୍ଛା କରୁଥିଲେ । ଈଶ୍ୱରଙ୍କ ବିଷୟ ଜାଣିବାପାଇଁ ସେ ରାଜା ରାମମୋହନ ରାୟଙ୍କ ପ୍ରତିଷ୍ଠିତ ବ୍ରାହ୍ମସମାଜରେ ଯୋଗ ଦେଇଥିଲେ । ସେ ଭାବିଥିଲେ, ଏ ସମାଜରେ ରହି ସେ ଭଲ ବାଟର ସନ୍ଧାନ ପାଇବେ । ସେତେବେଳେ କେଶବଚନ୍ଦ୍ର ସେନ ଓ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ପରି ଲୋକେ ବ୍ରାହ୍ମସମାଜର ନେତା ଥିଲେ । ବ୍ରାହ୍ମମାନେ ଈଶ୍ୱର ଏକ ବୋଲି ବିଶ୍ୱାସ କରନ୍ତି । ନରେନ୍ଦ୍ରନାଥ କେବଳ ଏତିକରେ ସନ୍ତୁଷ୍ଟ ହୋଇ ରହି ପାରିଲେ ନାହିଁ । ଦିନେ ସେ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କୁ ପଚାରିଲେ, "ମହାଶୟ, ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି ?" ସେ କଅଣ କହିଲେ

ଜଣା ନାହିଁ, କିନ୍ତୁ ତାହାପରେ ନରେନ୍ଦ୍ରନାଥ ଅନେକ ଧର୍ମାତ୍ମା ଲୋକଙ୍କୁ ମଧ୍ୟ ଏହି ପ୍ରଶ୍ନ ପଚାରିଥିଲେ । କେହି ତାଙ୍କୁ ଏହାର ଠିକ୍ ଉତ୍ତର ଦେଇପାରିଲେ ନାହିଁ ।

କଲିକତା ନିକଟରେ ଦକ୍ଷିଣେଶ୍ୱର । ସେଠାରେ କାଳୀ-ଠାକୁରାଣୀଙ୍କ ମନ୍ଦିର । ଶ୍ରୀରାମକୃଷ୍ଣ ଠାକୁରାଣୀଙ୍କର ପୂଜକ ଥିଲେ । ସେ ଈଶ୍ୱରଙ୍କୁ ଦେଖିଛନ୍ତି ବୋଲି ସମସ୍ତେ କହୁଥିଲେ । ନରେନ୍ଦ୍ରନାଥ ଦକ୍ଷିଣେଶ୍ୱରକୁ ଯାଇ ଶ୍ରୀରାମକୃଷ୍ଣଙ୍କୁ ଦେଖିଲେ । ସେଠାରେ ସେ ଦୁଇଟି ବଙ୍ଗଳା ଭଜନ ଗାଇଥିଲେ । ଗୀତ ଶୁଣି ଶ୍ରୀରାମକୃଷ୍ଣଙ୍କ ଆଖିରୁ ଲୁହ ବୋହି ପଡ଼ିଲା । ନିଜ ପୁଅକୁ ଦେଖିଲେ ମନ ଯେପରି ହୁଏ, ନରେନ୍ଦ୍ରନାଥଙ୍କୁ ଦେଖି ତାଙ୍କ ମନ ସେହିପରି ହୋଇଗଲା । ସେ ନରେନ୍ଦ୍ରନାଥଙ୍କୁ କହିଲେ, "ତୋ ପାଖରେ ଈଶ୍ୱରଙ୍କର ବଡ଼ କାମ ରହିଛି । ସେତିକ ତୋତେ ସାଧନ କରିବାକୁ ହେବ ।"

ନରେନ୍ଦ୍ରନାଥ ବାରମ୍ବାର ଦକ୍ଷିଣେଶ୍ୱରକୁ ଗଲେ । ଦିନେ ରାମକୃଷ୍ଣ ଶୋଇଥିଲେ । ନରେନ୍ଦ୍ର ତାଙ୍କ ପାଖରେ ପହଞ୍ଚିବାରୁ ସେ ତାଙ୍କୁ ବିଛଣା ଉପରେ ବସିବାକୁ କହିଲେ । ତା'ପରେ ଶ୍ରୀରାମକୃଷ୍ଣ ନରେନ୍ଦ୍ରନାଥଙ୍କ ଦେହରେ ହାତ ବୁଲାଇଦେଲେ । ନରେନ୍ଦ୍ରନାଥ ମନେ କଲେ କାନ୍ଥ, ଘର, ପୃଥିବୀ ଯେପରି ସବୁ ଘୂରୁଛି, ସେ ନିଜେ ମଧ୍ୟ ଘୂରୁଛନ୍ତି ଓ ମୃତ୍ୟୁମୁହଁରେ ଠିଆହୋଇଛନ୍ତି । କିଛି ବୁଝି ନ ପାରି ସେ ଡ଼ାକ ପକାଇଲେ, "ଠାକୁର, ଏ କଣ ହୋଇଗଲା । ଘରେ ମୋର ବାପ, ମା, ଭାଇ, ଭଉଣୀ ସମସ୍ତେ ଅଛନ୍ତି ।" ଶ୍ରୀରାମକୃଷ୍ଣ ଏ' କଥା ଶୁଣି ହସିଲେ । ତା'ପରେ ନରେନ୍ଦ୍ରନାଥ ଘରକୁ ଫେରିଲେ ।

ଏହା ଉତ୍ତାରୁ ବାରମ୍ବାର ସେ ଶ୍ରୀରାମକୃଷ୍ଣଙ୍କ ପାଖକୁ ଯାଉଥିଲେ । ପ୍ରଥମେ ପ୍ରଥମେ ନରେନ୍ଦ୍ରନାଥ ତାଙ୍କ ମତ ଗ୍ରହଣ କଲେ ନାହିଁ । ପରେ ସେ ତାଙ୍କର ଏକନିଷ୍ଠ ଭକ୍ତ ହୋଇଥିଲେ । ଏହି ସମୟରେ ନରେନ୍ଦ୍ରଙ୍କ ପିତାଙ୍କର ମୃତ୍ୟୁ ହେଲା । ତାଙ୍କର ପିତା ଯେତେ ଟଙ୍କା ଉପାର୍ଜନ କରିଥିଲେ ତାହାଠାରୁ ଅଧିକ ଖର୍ଚ୍ଚ କରି ବହୁତଟଙ୍କା ଋଣ କରିଥିଲେ । ପରିବାରରେ ସାତ ଜଣ ଲୋକ । ସେମାନଙ୍କୁ ପୋଷିବା ଭାର ନରେନ୍ଦ୍ରଙ୍କ ଉପରେ । ସେତେବେଳେ ନରେନ୍ଦ୍ରନାଥ ବି. ଏ. ପାସ୍ କରି ଆଇନ୍ କଲେଜରେ ପଢୁଥିଲେ । ପିତାଙ୍କର ମୃତ୍ୟୁପରେ ତାଙ୍କ ଅବସ୍ଥା ଏପରି ହେଲା ଯେ, ଖଣ୍ଡିଏ ନୂଆ କାମିଜ ଓ ଯୋଡ଼ାଏ ନୂଆ ଯୋତା କିଣିବାକୁ ତାଙ୍କର କ୍ଷମତା ନ ଥିଲା । ଏସବୁ ଦୁଃଖ ଜଞ୍ଜାଳ ଭିତରେ ସେ ଠାକୁର ଶ୍ରୀରାମକୃଷ୍ଣଙ୍କ ପାଖକୁ ଗଲେ ସବୁ କଥା ଭୁଲିଯାଉଥିଲେ । ଦିନେ ଶ୍ରୀରାମକୃଷ୍ଣ ଧର୍ମର ତିନୋଟି ବାଟ ତାଙ୍କୁ ବୁଝାଇ କହିଲେ—"ସବୁବେଳେ ଭଗବାନଙ୍କର ନାମ ସ୍ମରଣ କରିବ, ସବୁ ଜୀବରେ ଦୟା କରିବ, ଯେଉଁମାନେ ଭଗବାନଙ୍କ ଭକ୍ତି କରନ୍ତି ସେମାନଙ୍କ ପୂଜା କରିବ ।" ଏହି ତିନୋଟି କଥା ଧର୍ମର ମୂଳଦୁଆ । ନରେନ୍ଦ୍ରନାଥ ଏସବୁ ଶୁଣିଲେ; କିନ୍ତୁ ସେତେବେଳେ ସେ ସଂସାର ଛାଡ଼ି ସନ୍ନ୍ୟାସୀ ହେବେ କି ନା ତାହା ଠିକ୍ କରି ନ ଥିଲେ । ଶ୍ରୀରାମକୃଷ୍ଣ ଅସୁସ୍ଥ ହୋଇ କିଛି ଦିନ ପରେ ସ୍ୱର୍ଗାରୋହଣ କଲେ । ତାହା ପୂର୍ବରୁ ତାଙ୍କ କାମ ଚଳାଇବା ଭାର ନରେନ୍ଦ୍ରନାଥଙ୍କ ଉପରେ ଦେଇଗଲେ । ଗୁରୁଙ୍କର ସ୍ୱର୍ଗାରୋହଣ ପରେ ସେ ରାମକୃଷ୍ଣ ମଠ ସ୍ଥାପନ କରିଥିଲେ ।

ସନ୍ନ୍ୟାସୀ ହୋଇ ଯେଉଁମାନେ ଏ ମଠରେ ଯୋଗ ଦେଉଥିଲେ ସେମାନଙ୍କୁ ନିଜ ନାମ ବଦଳାଇବାକୁ ପଡ଼ୁଥିଲା । ସେମାନେ

ବ୍ରହ୍ମଚର୍ଯ୍ୟ ରକ୍ଷିବେ ଓ ଭଗବାନଙ୍କ ପାଇଁ କାମ କରିବେ ବୋଲି ପ୍ରତିଜ୍ଞା କରୁଥିଲେ । ଏହି ସମୟରୁ ନରେନ୍ଦ୍ରନାଥଙ୍କ ନାମ ସ୍ୱାମୀ ବିବେକାନନ୍ଦ ହେଲା ।

୧୮୮୮ରେ ସ୍ୱାମୀ ବିବେକାନନ୍ଦ ଭାରତର ସବୁ ଅଞ୍ଚଳରେ ଭ୍ରମଣ କରିଥିଲେ । ସେ ଦିନେ ରାଜା ମହାରାଜାଙ୍କ ଅତିଥି ହେଲେ ଆଉଦିନେ ଦ୍ୱାରେ ଦ୍ୱାରେ ବୁଲି ଭିକ୍ଷା କରୁଥିଲେ । ଧର୍ମ ଓ ଭାଷାର ପାର୍ଥକ୍ୟ ଯୋଗୁଁ ଭାରତ ଭିନ୍ନ ଭିନ୍ନ ହୋଇଯାଇଛି ବୋଲି ସେ ବୁଝିପାରିଥିଲେ । ଏ ଜାତିକୁ ବଡ଼ କରିବା ପାଇଁ ଏକତା ଦରକାର ବୋଲି ତାଙ୍କର ଦୃଢ଼ ଧାରଣା ହୋଇଥିଲା ।

୧୮୯୩ ମସିହା ସେପ୍‌ଟେମ୍ବର ମାସରେ ଆମେରିକାର ଶିକାଗୋ ସହରରେ ପୃଥିବୀର ବିଭିନ୍ନ ଧର୍ମମାନଙ୍କର ଗୋଟିଏ ସଭା ହେଉଥିଲା । ସେଥିରେ ଯୋଗଦେଇ ହିନ୍ଦୁ ଧର୍ମ ବିଷୟରେ ସେ ବକ୍ତୃତା ଦେଲେ ପୃଥିବୀର ବିଭିନ୍ନ ଦେଶର ଲୋକେ ଏହାର ଗରିମା ଜାଣିପାରିବେ ବୋଲି ତାଙ୍କର କେତେକ ଶିଷ୍ୟ ତାଙ୍କୁ ପ୍ରବର୍ତ୍ତାଇବାରୁ ସେହି ବର୍ଷ ମଇ ମାସ ୩୧ ତାରିଖ ଦିନ ସେ ଆମେରିକା ଅଭିମୁଖରେ ଯାତ୍ରାକଲେ । ଆମେରିକାରେ ପହଞ୍ଚି ତାଙ୍କୁ ମହା ଅସୁବିଧାରେ ପଡ଼ିବାକୁ ହେଲା । ତାଙ୍କ ପୋଷାକ ସେ ଦେଶର ପୋଷାକ ଠାରୁ ଅଲଗା । ସେତେବେଳେ ସେଠାରେ ତାଙ୍କର କେହି ପରିଚିତ ନ ଥିଲେ । ଭୋକ ଉପାସରେ ତାଙ୍କୁ ନାନା ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ିଥିଲା ।

ସେପ୍‌ଟେମ୍ବର ମାସ ୨୧ ତାରିଖ ଦିନ ଧର୍ମସଭାର ବୈଠକ ଆରମ୍ଭ ହେଲା । ପୃଥିବୀର ବଡ଼ ବଡ଼ ଦେଶର ବିଭିନ୍ନ ଧର୍ମର ବଡ଼ ବଡ଼ ଲୋକ ସେଠାରେ ଥିଲେ । ସେଠାରେ ସ୍ୱାମୀଜୀଙ୍କର

ଗେରୁଆ ପୋଷାକ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେ ବକ୍ତୃତା ଦେବାକୁ ଠିଆ ହେବାରୁ ସମସ୍ତେ ବିସ୍ମିତ ହୋଇଥିଲେ । ସେ ଏପରି କେତେଗୁଡ଼ିଏ କଥା କହିଲେ, ଯାହା ଶୁଣି ଲୋକେ ମୁଗ୍ଧ ହୋଇ ଯାଇଥିଲେ । ସେଠାରେ ସେ ଘୋଷଣା କରିଥିଲେ ଯେ, ହିନ୍ଦୁଧର୍ମରୁ ସବୁ ଧର୍ମର ଜନ୍ମ । ସବୁ ଧର୍ମର ଉଦ୍ଦେଶ୍ୟ ଗୋଟିଏ । ଏହାପରେ ତାଙ୍କର ଖ୍ୟାତି ଏତେ ବଢ଼ିଗଲା ଯେ ତାଙ୍କ କଥା ଶୁଣିବା ପାଇଁ ଚାରିଆଡ଼ୁ ତାଙ୍କୁ ନିମନ୍ତ୍ରଣ ଆସିଲା । ସେ ଆମେରିକାରେ ସବୁଆଡ଼ି ବୁଲି ଲୋକଙ୍କୁ ହିନ୍ଦୁଧର୍ମର ମୂଳକଥା ଶୁଣାଇଥିଲେ । ଏହି ସମୟରେ ସେଠାରେ କେତେଗୁଡ଼ିଏ ସହରରେ ରାମକୃଷ୍ଣ ମଠ ପ୍ରତିଷ୍ଠିତ ହେଲା ।

ତାପରେ ସେ ଇଉରୋପର ବିଭିନ୍ନ ଦେଶ ବୁଲି ହିନ୍ଦୁଧର୍ମ ପ୍ରଚାର କଲେ । ସେତେବେଳେ ଇଂଲଣ୍ଡରେ ମଧ୍ୟ ସେ ଖ୍ୟାତି ଅର୍ଜନ କରିଥିଲେ ।

ଏହାପରେ ସେ ଭାରତକୁ ଫେରି ଆସିଲେ । ମାନ୍ଦ୍ରାଜ ଓ କଲିକତାଠାରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା । ଦୁଃଖୀ-ରଙ୍କୀଙ୍କ ସେବା ପାଇଁ ଏହି ସମୟରେ ସେ ରାମକୃଷ୍ଣ ମିଶନ ପ୍ରତିଷ୍ଠା କରିଥିଲେ । ଗୋଟିଏ ସ୍ଥାନରେ ସ୍ଥିର ହୋଇ ରହିବା ତାଙ୍କର ଅଭ୍ୟାସ ନ ଥିଲା । ସେ ଆଉ ଥରେ ଭାରତ ସାରା ଭ୍ରମଣ କରିଥିଲେ । ଏହି ସମୟରେ ବେଲୁଡ଼ ମଠ ସ୍ଥାପିତ ହୋଇଥିଲା ।

ସ୍ୱାମୀ ବିବେକାନନ୍ଦ ଆଉଥରେ ପାଶ୍ଚାତ୍ୟ ଦେଶମାନଙ୍କରେ ଯାଇ ଭ୍ରମଣ କରିଥିଲେ । ତାପରେ ଫେରିଆସି ସେ ମଠରେ ରହିଲେ ।

୧୯୦୨ ଖ୍ରୀଷ୍ଟାବ୍ଦ ଜୁନ ମାସ ୪ ତାରିଖ । ସେଦିନ ସକାଳେ ପୂଜାଘରେ ବସି ୩ ଘଣ୍ଟା କାଳ ସେ ଧ୍ୟାନ ଓ ସ୍ତବଗାନ କରିଥିଲେ । ବାହାରକୁ ଆସି କିଛିସମୟ ବୁଲିଲାପରେ ସେ ଛାତ୍ରମାନଙ୍କୁ ବେଦାନ୍ତ ପଢ଼ାଇଲେ । ସନ୍ଧ୍ୟା ସମୟରେ ତାଙ୍କ କୋଠରି ଭିତରେ ସେ ପ୍ରାର୍ଥନା କଲେ । ତପ୍ପରେ ସେ ହାତରେ ମାଳାଟିଏ ଧରି ବିଛଣାରେ ଶୋଇପଡ଼ିଲେ । ଶୋଇଥିବା ସମୟରେ ସେ ଦେହତ୍ୟାଗ କଲେ । ସେତେବେଳକୁ ତାଙ୍କର ବୟସ ୩୯ ବର୍ଷ ହୋଇଥିଲା ।

ସ୍ୱାମୀ ବିବେକାନନ୍ଦ ଓ ତାଙ୍କର ଗୁରୁ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଆଜି ନାହାନ୍ତି ; କିନ୍ତୁ ତାଙ୍କ ପ୍ରତିଷ୍ଠିତ ରାମକୃଷ୍ଣ ମିଶନ ଦେଶରେ ଧର୍ମପ୍ରଚାର କରିବା ସଙ୍ଗେ ସଙ୍ଗେ ଅଶେଷ ଉପକାର ସାଧନ କରୁଛି ।

—— ——

# ମହାତ୍ମାଗାନ୍ଧି

ଆମର 'ଗୀତା' ବୋଲି ଖଣ୍ଡିଏ ବହି ଅଛି । ସେଥିରେ ଲେଖାଅଛି, "ଯେଉଁଠି ଧର୍ମ ପଡ଼ିଯାଏ, ଅଧର୍ମ ବଢ଼ିଯାଏ, ସେଠାରେ ଭଗବାନ ନିଜେ ଅବତୀର୍ଣ୍ଣ ହୋଇ ଧର୍ମକୁ ରକ୍ଷା କରନ୍ତି ।" ଥରେ ନୁହେଁ, ଦୁଇଥର ନୁହେଁ, ଯୁଗେ ଯୁଗେ ଥରକୁ ଥର ଏ ଦେଶରେ ଏ କଥା ଘଟିଛି । ଅଢ଼େଇ ହଜାର ବର୍ଷ ପୂର୍ବେ ଏ ଦେଶରେ ବୁଦ୍ଧଦେବ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପରେ ଚୈତନ୍ୟ, ନାନକ, କବୀର, ରାମାନୁଜ ଆଦି ଅନେକ ମହାପୁରୁଷ ଜନ୍ମ ହୋଇ ଏ ଦେଶର ଲୋକଙ୍କୁ ନୂଆ ନୂଆ ବାଟ ଦେଖାଇ ନାନା ଦୁଃଖ କଷ୍ଟରୁ ରକ୍ଷା କରିଥିଲେ । ଏ ଦେଶରେ ଶିବାଜୀ, ପ୍ରତାପ ସିଂହ, ଗୁରୁଗୋବିନ୍ଦ ସିଂହ ଆଦି ମହାବୀରମାନେ ଜନ୍ମଗ୍ରହଣ କରି ଦେଶକୁ ପରାଧୀନତାରୁ ମୁକ୍ତ ଦେବା ପାଇଁ ବାରମ୍ବାର ଯୁଦ୍ଧ କରିଥିଲେ । ଗୋଟିକ ପରେ ଗୋଟିଏ ମହାପୁରୁଷ ଏ ଦେଶରେ ଜନ୍ମଗ୍ରହଣ କରିଛନ୍ତି । ମହାତ୍ମା ଗାନ୍ଧି ସେମାନଙ୍କ ଭିତରୁ ଜଣେ । ଭାରତବାସୀଙ୍କୁ ଇଂରେଜମାନଙ୍କ ଅଧୀନତାରୁ ମୁକ୍ତ ଦେବାପାଇଁ ସେ ଜନ୍ମଗ୍ରହଣ କରିଥିଲେ । ସତ୍ୟ ଓ ଅହିଂସା ଏହି ଦୁଇଟି ନୀତିକୁ ମୂଳକରି ଏ ଦେଶର ଲୋକଙ୍କୁ ସେ ମୁକ୍ତିର ବାଟ ବତାଇ ଯାଇଛନ୍ତି ।

ମହାତ୍ମା ଗାନ୍ଧିଙ୍କର ପୂରା ନାମ ମୋହନଦାସ କରମଚାନ୍ଦ ଗାନ୍ଧି । ଗୁଜୁରାଟୀ ମରହଟ୍ଟୀ ଆଦି କେତେକ ସମାଜରେ ନିଜ ନାମ ସହିତ ବାପାଙ୍କ ନାମ ଲେଖାହୁଏ । ମହାତ୍ମାଗାନ୍ଧିଙ୍କର ନିଜ ନାମ ମୋହନଦାସ, ବାପାଙ୍କର ନାମ କରମଚାନ୍ଦ ଓ ଉପାଧି ଗାନ୍ଧି ।



ଭାରତର ପଶ୍ଚିମ ଭାଗରେ ବମ୍ବେ ରାଜ୍ୟ ଭିତରେ ଗୁଜୁରାଟ ଥିଲା । ବର୍ତ୍ତମାନ-ଗୁଜୁରାଟ ସ୍ୱତନ୍ତ୍ର ରାଜ୍ୟ ହୋଇଯାଇଛି । ଏହି ଗୁଜୁରାଟର ଗୋଟିଏ ଅଂଶ କାଥିଆବାଡ଼ । ଆମ ଓଡ଼ିଶାରେ ଏକ ସମୟରେ ତିଗିରିଆ, ଆଠଗଡ଼ ପରି ଗୁଡ଼ିଏ ସାନ ସାନ ଗଡ଼ଜାତ ରାଜ୍ୟ ଥିଲା । କାଥିଆବାଡ଼ରେ ସେହିପରି କେତୋଟି

ଦେଶୀୟ ରାଜ୍ୟ ଥିଲା । ଏହି କାଥିଆବାଡ଼ ନିକଟରେ ଶ୍ରୀକୃଷ୍ଣଙ୍କର ରାଜଧାନୀ ଦ୍ୱାରକାପୁରୀ ଥିଲା ବୋଲି ମହାଭାରତରେ ଲେଖାଅଛି । ଆଜି ମଧ୍ୟ ଦ୍ୱାରକା ଭାରତ ବର୍ଷର ଗୋଟିଏ ପ୍ରଧାନ ତୀର୍ଥସ୍ଥାନ ।

ପୋରବନ୍ଦର ରାଜ୍ୟରେ ଅନେକଗୁଡ଼ିଏ ଗାନ୍ଧି ପରିବାର ଅଛନ୍ତି । ସେମାନଙ୍କ ଭିତରେ କରମଚାନ୍ଦ ଗାନ୍ଧିଙ୍କ ଘର ସେ ଅଞ୍ଚଳରେ ଟିକିଏ ବେଶୀ ଜଣାଶୁଣା ଥିଲା । କରମଚାନ୍ଦ ଗାନ୍ଧିଙ୍କ ବାପା ଏକାଧିକ ଗଡ଼ଜାତ ରାଜ୍ୟରେ ଦେବାନ୍ କାମ କରୁଥିଲେ । କରମଚାନ୍ଦ ମଧ୍ୟ କେତୋଟି ରାଜ୍ୟର ଦେବାନ୍ ଥିଲେ । ସେ ଧର୍ମନିଷ୍ଠ ଓ ଚରିତ୍ରବାନ ଥିଲେ । ତାଙ୍କୁ ଲୋକେ ବଡ଼ ବୋଲି ମାନୁଥିଲେ । ସେ ଚାରିଥର ବିବାହ କରିଥିଲେ । କରମଚାନ୍ଦଙ୍କର ଚତୁର୍ଥ ପତ୍ନୀଙ୍କର ସବା ସାନପୁଅ ମୋହନ ଦାସ । ସେ ୧୮୬୯ ମସିହା ଅକ୍ଟୋବର ମାସ ୨ ତାରିଖ ଦିନ ଭୂମିଷ୍ଠ ହୋଇଥିଲେ ।

ଗାନ୍ଧିଜୀ ପିଲାଦିନେ ବାପାଙ୍କୁ ହରାଇଥିଲେ । ତାଙ୍କୁ ମଣିଷ କରି ବଡ଼ାଇବା ଭାର ତାଙ୍କ ମାଆଙ୍କ ଉପରେ ପଡ଼ିଥିଲା । ଗାନ୍ଧିଙ୍କ ମାଆ ଜଣେ ଆଦର୍ଶ ନାରୀ । ସେ ଧର୍ମପ୍ରାଣା ଥିଲେ । ପ୍ରତିଦିନ ଈଶ୍ୱରଙ୍କୁ ପୂଜା କରୁଥିଲେ, ସୂର୍ଯ୍ୟଙ୍କୁ ଦର୍ଶନ ନ କରି ସେ ଜଳ ଗ୍ରହଣ କରୁ ନଥିଲେ । ମା'ଙ୍କର ଏହି ପ୍ରଭାବ ଗାନ୍ଧିଙ୍କ ଉପରେ ପଡ଼ିଥିଲା । ମା'ଙ୍କ କଥା ମାନି, ତାଙ୍କର ଆଦର୍ଶ ଅନୁସରଣ କରି ସେ ଯେଉଁ ସାଧନା କରିଥିଲେ, ତାହାରି ଫଳରେ ଲୋକେ ତାଙ୍କୁ ମହାତ୍ମା ବୋଲି ଡାକିଲେ ।

ଗୁଜୁରାଟର ବୈଶ୍ୟ ବଣିଆମାନେ ମାଛ, ମାଂସ ଛୁଅନ୍ତି ନାହିଁ । ଗାନ୍ଧିଜୀ ସ୍କୁଲରେ ପଢ଼ୁଥିଲାବେଳେ ଗୁଜୁରାଟରେ ମାଛ, ମାଂସ

ଖାଇବା ଭଲ କି ନିରାମିଷ ଖାଇବା ଭଲ, ଏ ବିଷୟକୁ ନେଇ ଗୋଟିଏ ଆନ୍ଦୋଳନ ଚାଲିଥିଲା । କେତେକ ଲୋକ ଯୁକ୍ତି କରି କହୁଥିଲେ ଯେ, ଭାରତର ଲୋକେ ଅଧିକ ପରିମାଣରେ ମାଛମାଂସ ଖାଉ ନ ଥିବାରୁ ସେମାନେ ଦୁର୍ବଳ । ସେଥିପାଇଁ ସେମାନେ ନିଜର ସ୍ୱାଧୀନତା ରକ୍ଷା କରିପାରିଲେ ନାହିଁ । ଇଂରେଜମାନଙ୍କ ପ୍ରଧାନ ଖାଦ୍ୟ ମାଂସ । ସେଥିପାଇଁ ସେମାନେ ବଳୁଆ । ତାଙ୍କର ବଳ ଥିବାରୁ ଏଡ଼େବଡ଼ ଭାରତବର୍ଷକୁ ସେମାନେ ପରାଧୀନ କରି ରଖିଛନ୍ତି । ଭାରତୀୟମାନେ ମାଛ ମାଂସ ଖାଇଲେ ସେମାନଙ୍କର ବଳ ବଢ଼ିବ ଓ ସେମାନେ ଇଂରେଜମାନଙ୍କୁ ଦେଶରୁ ତଡ଼ି ପୁଣି ସ୍ୱାଧୀନ ହୋଇ ପାରିବେ ।

ଗାନ୍ଧିଜୀ ଯେଉଁ ସ୍କୁଲରେ ପଢ଼ୁଥିଲେ, ସେଠାରେ ଏ ଆନ୍ଦୋଳନର ପ୍ରଭାବ ପଡ଼ିଥିଲା । ମାଂସ ଖାଇବାପାଇଁ ସାଙ୍ଗମାନେ ଗାନ୍ଧିଜୀଙ୍କୁ ପ୍ରବର୍ତ୍ତାଇଲେ । ଗାନ୍ଧିଜୀ ସେମାନଙ୍କ କଥାରେ ଭୁଲିଗଲେ; କିନ୍ତୁ ଘରେ ତ ମାଛ, ମାଂସ ପଶେ ନାହିଁ, ସେ ଖାଇବେ କିପରି ? ମା'ଙ୍କୁ ମଧ୍ୟ ଏ କଥା କୁହାଯାଇ ନ ପାରେ ; ତେଣୁ ଥରେ ଗୋଟିଏ ନଦୀ କୂଳରେ ଛେଳିମାଂସ ରାନ୍ଧି କେତେଜଣ ପିଲାଙ୍କ ସହିତ ଖାଇଥିଲେ । ଏ ଦୁଷ୍କର୍ମ ପାଇଁ ତାଙ୍କ ମନରେ ସଙ୍ଗେ ସଙ୍ଗେ କ୍ଷୋଭ ଜାତ ହେଲା । ସେଦିନ ରାତିରେ ଶୋଇଥିବାବେଳେ ତାଙ୍କର ମନେ ହେଲା, ତାଙ୍କ ପେଟ ଭିତରେ ଗୋଟିଏ ଜୀଅନ୍ତା ଛେଳି ରଡ଼ି ଛାଡ଼ୁଛି । ତହିଁ ଆରଦିନ ସେ ମାଙ୍କ ପାଖରେ ସବୁ କଥା କହିଲେ । ସେହି ଦିନଠାରୁ ଆଜୀବନ ସେ ନିରାମିଷାଶୀ ଥିଲେ ।

ମା'ଙ୍କର ଶିକ୍ଷା ଓ ଆଦର୍ଶ ଯୋଗୁଁ ସତ କହିବା ଓ ନ୍ୟାୟରେ ଚାଲିବା ପିଲାଦିନୁ ତାଙ୍କର ଅଭ୍ୟାସ ଥିଲା ।

ଗାନ୍ଧିଜୀଙ୍କ ଛାତ୍ରଜୀବନରେ ଏହାର ଗୋଟିଏ ଉଦାହରଣ ରହିଛି । ସେ ସେତେବେଳେ ପିଲା, ସ୍କୁଲରେ ପଢ଼ୁଥିଲେ । ଜଣେ ସ୍କୁଲ ଇନ୍‌ସ୍‌ପେକ୍ଟର ତାଙ୍କ ଶ୍ରେଣୀକୁ ଆସି ଛାତ୍ରମାନଙ୍କୁ ପାଞ୍ଚଟି ଇଂରେଜୀ ଶବ୍ଦ ଲେଖିବାକୁ କହିଲେ । ଗୋଟିଏ ଶବ୍ଦର ବନାନ ଗାନ୍ଧିଜୀ ଭୁଲ କରିଛନ୍ତି ବୋଲି ଦେଖି ଶ୍ରେଣୀର ଶିକ୍ଷକ ଇସାରା ଦେଇ ଠିକ୍ ବନାନଟି ବତାଇଦେଲେ । ଗାନ୍ଧିଜୀ ଏ ଇସାରା ଧରି ଠିକ୍ ବନାନ୍ ଲେଖିଲେ ନାହିଁ; କିନ୍ତୁ ପାଖ ପିଲାଏ ଶିକ୍ଷକଙ୍କ ଇସାରା ପାଇ ବନାନ୍ ଠିକ୍ କରି ଲେଖିଲେ । ଫଳରେ ତାଙ୍କର ସାଙ୍ଗ ପିଲାମାନେ ଶବ୍ଦର ବନାନ୍‌ଟି ଠିକ 'ଲେଖିଲେ ମଧ୍ୟ ଗାନ୍ଧିଜୀଙ୍କର ଭୁଲ ହୋଇଥିଲା । ଇନ୍‌ସ୍‌ପେକ୍ଟର ଯିବାପରେ ସ୍କୁଲର ଶିକ୍ଷକ ଏଥିପାଇଁ ତାଙ୍କୁ ଗାଳିଦେଲେ, କିନ୍ତୁ ଶିକ୍ଷକଙ୍କର ଏ ବ୍ୟବହାର ତାଙ୍କୁ ଭଲ ଲାଗିଲା ନାହିଁ । ତାହା ବୋଲି ସେ ଏହି ଶିକ୍ଷକଙ୍କ ପ୍ରତି ତାଙ୍କର ଶ୍ରଦ୍ଧା କମ୍ ହୋଇ ଯାଇଥିଲା, ଏପରି ନୁହେଁ । କାରଣ ସେ ପିଲାଦିନୁ ମା'ଙ୍କଠାରୁ ଶିଖିଥିଲେ, ଗୁରୁଜନମାନଙ୍କର କୌଣସି ଦୋଷ ବାଛିବା ପିଲାଙ୍କ ପକ୍ଷରେ ଅନ୍ୟାୟ ।

ସେ ସମୟରେ ଗୁଜୁରାଟର ବୈଶ୍ୟ ବଣିକଶ୍ରେଣୀରେ ବାଲ୍ୟ ବିବାହ ଚଳୁଥିଲା । ଗାନ୍ଧିଜୀଙ୍କୁ ୧୩ ବର୍ଷ ବୟସ ବେଳେ ତାଙ୍କର ବିବାହ ହୋଇଥିଲା । ବିବାହ ସମୟରେ ତାଙ୍କର ସହଧର୍ମିଣୀ କସ୍ତୁରବାଙ୍କ ବୟସ ୧୩ ବର୍ଷ ଥିଲା । କସ୍ତୁରବା ଆଦୌ ଲେଖି ପଢ଼ି ଜାଣି ନ ଥିଲେ । ସେ ଗୋଟିଏ ପୁରୁଣାକାଳିଆ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ; ତେଣୁ ଲେଖାପଢ଼ା କରି ଆଧୁନିକ ମହିଳାଙ୍କ ପରି ଚାଲି ଚଳନ ହେବାପାଇଁ ସେ ଲଜ୍ଜା ବୋଧ କରୁଥିଲେ । ଗାନ୍ଧିଜୀ ତାଙ୍କୁ ଏ ବାଟରେ ଚଳାଇବାକୁ ଯାଇ ସଫଳ ହୋଇ ପାରିଲେ ନାହିଁ ।

ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ଗାନ୍ଧିଜୀ କିଛି ସମୟ ପାଇଁ ଅହମ୍ମଦାବାଦ କଲେଜରେ ପଢ଼ିଥିଲେ । ତା’ ପରେ ସେ ବାରିଷ୍ଟରୀ ପଢ଼ିବା ପାଇଁ ଲଣ୍ଡନ ଯିବାକୁ ସ୍ଥିର କଲେ ।

ବିଲାତ ଯିବାକୁ ହେଲେ ବହୁତ ଟଙ୍କା ଦରକାର । ଏତେ ଟଙ୍କା ଆସିବ କୁଆଡ଼ୁ ? ଟଙ୍କା ଏକାଠି କରିବା ପାଇଁ ତାଙ୍କୁ ନିଜ ସ୍ତ୍ରୀଙ୍କ ଅଳଙ୍କାର ମଧ୍ୟ ବିକଦେବାକୁ ପଡ଼ିଥିଲା ।

ବିଲାତ ଯିବା ପୂର୍ବରୁ ଗାନ୍ଧିଜୀ ମା’ଙ୍କ ପାଖରେ ପ୍ରତିଜ୍ଞା କରି ଯାଇଥିଲେ, ସେ ମଦ ମାଂସ ଖାଇବେ ନାହିଁ । ବିଲାତରେ ଥିବା ସମୟରେ ଗାନ୍ଧିଜୀ ନାନା ପ୍ରଲୋଭନ ଏଡ଼ାଇ ତାଙ୍କର ପ୍ରତିଜ୍ଞାପାଳନ କରିଥିଲେ ।

ବିଲାତରେ ୩ ବର୍ଷ ରହି ବାରିଷ୍ଟରୀ ପାସ କରିବା ପରେ ଗାନ୍ଧିଜୀ ଭାରତକୁ ଫେରିଲେ । ପ୍ରଥମେ ବମ୍ବେଠାରେ ସେ ବାରିଷ୍ଟରୀ ବ୍ୟବସାୟ ଆରମ୍ଭ କଲେ । ବାରିଷ୍ଟରୀ କରିବାକୁ ହେଲେ ଭଲ-ଭାବରେ କଥା କହିବା ଶକ୍ତି ଥିବା ଦରକାର । ଗାନ୍ଧିଜୀଙ୍କ ଠାରେ ସେତିକ ନ ଥିଲା । ପ୍ରଥମ ମକଦ୍ଦମାଟିରେ ଜଣେ ସାକ୍ଷୀକୁ ଜେରା କରିବାକୁ ଉଠି ତାଙ୍କର ଆଦୌ ତୁଣ୍ଡ ଫିଟିଲା ନାହିଁ । ସେ ତାକୁ କୌଣସି କଥା ନ ପଚାରି ବସି ପଡ଼ିବାକୁ ବାଧ୍ୟ ହେଲେ । ବାରିଷ୍ଟରୀ ବ୍ୟବସାୟରେ ସେ ଭାରତରେ ବେଶି ଉନ୍ନତି କରିପାରି ନ ଥିଲେ ।

୧୮୯୩ ଖ୍ରୀଷ୍ଟାବ୍ଦରେ ଗୋଟିଏ ମକଦ୍ଦମା ସମ୍ପର୍କରେ ତାଙ୍କୁ ଦକ୍ଷିଣ ଆଫ୍ରିକା ଯିବାକୁ ପଡ଼ିଲା । ଦକ୍ଷିଣ-ଆଫ୍ରିକାରେ ବହୁ ସଂଖ୍ୟାରେ ଭାରତୀୟ ଥିଲେ । ସେମାନଙ୍କ ଭିତରେ ଗୁଜୁରାଟୀ ଓ ମଇମନ୍‌ଙ୍କ ସଂଖ୍ୟା ବେଶି । ସେମାନଙ୍କ ହାତରେ ବଡ଼ ବଡ଼

ବ୍ୟବସାୟ ବାଣିଜ୍ୟ ରହିଥିଲା । ସେ ସମୟରେ ଦକ୍ଷିଣ ଆଫ୍ରିକାରେ କଳା ଗୋରା ଭେଦ ଉତ୍କଟ ଆକାରରେ ରହିଥିଲା । ଆଜି ମଧ୍ଯ ସେ ଭେଦ ଦୂର ହୋଇ ନାହିଁ, କିନ୍ତୁ ସେତେବେଳର ଭେଦ ଏପରି ଥିଲା ଯେ, ଗୋରାଲୋକ ଯେଉଁ ରେଳ ଡବାରେ ଯାଉଥିଲେ ଭାରତୀୟମାନେ ସେଥିରେ ପଶି ପାରୁ ନ ଥିଲେ । ସହର ବଜାରରେ ଏପରି କେତେକ ବାଟ ଥିଲା ଯେଉଁଥିରେ ଭାରତୀୟମାନଙ୍କୁ ଯିବା ପାଇଁ ମନା ଥିଲା । ଧନୀ ଦରିଦ୍ର ସବୁ ଭାରତୀୟଙ୍କୁ ଏହି କାରଣରୁ ନାନା ଲାଞ୍ଛନା ଭୋଗିବାକୁ ପଡୁଥିଲା । ଗାନ୍ଧିଜୀ ମଧ୍ଯ ଏପରି ନର୍ଯ୍ୟାତନା ଅଙ୍ଗେ ନିଭେଇଥିଲେ ।

ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାକୁ ବାରିଷ୍ଟରୀ କରିବାକୁ ଆସି ଭାରତୀୟମାନଙ୍କର ନେତା ହୋଇଥିଲେ । ସେତେବେଳେ ସେ ବାରିଷ୍ଟରୀ ବ୍ୟବସାୟରେ ବହୁତ ଟଙ୍କା ରୋଜଗାର କରୁଥିଲେ । ତାକୁ ଛାଡି ସେ କେତେକ ସହକର୍ମୀଙ୍କୁ ସଙ୍ଗରେ ଧରି ଗୋଟାଏ ଆଶ୍ରମ ସ୍ଥାପନ କଲେ । ସରଳ ଭାବରେ କିପରି ଜୀବନ ଯାପନ କରିବାକୁ ହେବ, ତାହା ସେ ସେଠାରେ ପରୀକ୍ଷା କରିଥିଲେ । ପରେ ଭାରତରେ ସାବରମତୀ ଓ ସେବାଗ୍ରାମଠାରେ ସେ ଦୁଇଟି ଆଶ୍ରମ ସ୍ଥାପନ କରିଥିଲେ । ଏ ଦୁଇଟି ଆଶ୍ରମ ଗାନ୍ଧିଜୀଙ୍କ ଆନ୍ଦୋଳନର ମୂଳଦୁଆ ପକାଇଥିଲା । ଦକ୍ଷିଣ ଆଫ୍ରିକାରେ ସେ "ଭାରତୀୟ ଜନମତ" ନାମକ ଗୋଟିଏ ସାପ୍ତାହିକ ଖବରକାଗଜ ମଧ୍ଯ ଚଳାଇଥିଲେ ।

ଦକ୍ଷିଣ ଆଫ୍ରିକାରେ ଗୋରାମାନଙ୍କ ଅତ୍ୟାଚାର ବିରୁଦ୍ଧରେ ଆନ୍ଦୋଳନ ଚାଲିଥିବା ସମୟରେ ଗାନ୍ଧିଜୀ ବ୍ରିଟିଶମାନଙ୍କୁ ଶତ୍ରୁ ବୋଲି ମନେ କରୁ ନ ଥିଲେ । ସେମାନେ ବିପଦରେ ପଡିଲେ ତାଙ୍କୁ

ସାହାଯ୍ୟ କରିବା ପାଇଁ ସେ ଆଗଭର ହୋଇ ବାହାରି ପଡ଼ୁଥିଲେ । ଦକ୍ଷିଣ ଆଫ୍ରିକାରେ ବୁଅରମାନଙ୍କ ସହିତ ଇଂରେଜମାନଙ୍କର ଲଢ଼େଇ ଲାଗିଥିଲା । ଜୁଲୁ ନାମକ ଏକ ଜାତିର ଲୋକ ମଧ୍ୟ ବିଦ୍ରୋହ କଲେ । ଏ ଦୁଇ ଅବସ୍ଥାରେ ଇଂରେଜମାନେ ବଡ଼ ଅଡ଼ୁଆରେ ପଡ଼ିଥିଲେ । ଆହତ ସୈନ୍ୟମାନଙ୍କ ଚିକିତ୍ସା ଓ ଶୁଶ୍ରୂଷା ପାଇଁ ସେଠାରେ ସେ ଗୋଟିଏ ଆମ୍ବୁଲାନ୍‌ସ ଦଳ ଗଢ଼ିଥିଲେ ।

୧୯୧୪ ସାଲରେ ଗାନ୍ଧିଜୀ ଭାରତ ଫେରିଲେ । ସେତେବେଳେ ବ୍ରିଟିଶ ଅଧୀନରୁ ମୁକ୍ତି ପାଇବା ପାଇଁ ଭାରତରେ ଅଳ୍ପ ଅଳ୍ପ ଆନ୍ଦୋଳନ ଚାଲିଥିଲା ।

୧୯୦୫ରେ ଅହମ୍ମଦାବାଦ ସହର ନିକଟରେ ସାବରମତୀ ନଦୀକୂଳରେ ସେ ଗୋଟିଏ ଆଶ୍ରମ ସ୍ଥାପନ କରିଥିଲେ । ସେ ଆଶ୍ରମର ନାମ 'ସତ୍ୟାଗ୍ରହ ଆଶ୍ରମ' । ଦକ୍ଷିଣ ଆଫ୍ରିକାରେ ଗାନ୍ଧିଜୀଙ୍କର ଯେଉଁ ଆଶ୍ରମ ଚାଲୁଥିଲା, ସତ୍ୟାଗ୍ରହ ଆଶ୍ରମ ସେହି ରୀତିରେ ଚାଲିଲା । ଏଠାରେ ହିନ୍ଦୁ, ମୁସଲମାନ, ଛୁଆଁ ଅଛୁଆଁ ଆଦି ଭେଦ ଭାବ ନ ଥିଲା । ଲୋକେ ନିଜେ ପରିଶ୍ରମ କରି ନିଜର ଜିନିଷ ତିଆରି କରୁଥିଲେ, ସୂତା କାଟି ଲୁଗା ପିନ୍ଧୁଥିଲେ, ପାଇଖାନା ନିଜେ ସଫା କରୁଥିଲେ । ସତ୍ୟ ଓ ଅହିଂସା ନୀତି ଅନୁସାରେ ଜୀବନ ଯାପନ କରୁଥିଲେ ।

ଏହି ସମୟରେ ଗୁଜୁରାଟର କାଇରା ଆଦି କେତେକ ଅଞ୍ଚଳରେ ଚାଷୀମାନେ ନାନା ନିର୍ଯ୍ୟାତନା ଭୋଗ କରୁଥିଲେ । ଗାନ୍ଧିଜୀ ସେମାନଙ୍କର ନେତୃତ୍ୱ ନେଇ ତାହାର ପ୍ରତିକାର କରିଥିଲେ । ସେହି ସମୟରୁ ଲୋକେ ତାଙ୍କୁ ମହାତ୍ମା ବୋଲି କହି ଦେବତାରୂପେ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ।

୧୯୧୮ରେ ପୃଥିବୀର ପ୍ରଥମ ମହାଯୁଦ୍ଧ ସରିଲା । ସେଥିରେ ବ୍ରିଟିଶ ପକ୍ଷ ଜୟଲାଭ କଲେ । ଯୁଦ୍ଧ ପୂର୍ବରୁ ଭାରତରେ ଯେଉଁ ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲା, ତାକୁ ଦବାଇ ଦେବାପାଇଁ ସେମାନେ ନାନା ଉଦ୍ୟମ ଆରମ୍ଭ କଲେ । ସେମାନେ ଭାରତ-ବାସୀଙ୍କୁ ସଭାସମିତି କରାଇ ନ ଦେବାପାଇଁ "ରାଓଲେଟ" ଆଇନ ନାମରେ ଗୋଟିଏ ଆଇନ ପ୍ରଣୟନ କଲେ । ତାହା ଫଳରେ ଲୋକେ ଉତ୍ତ୍ୟକ୍ତହେଲେ । ଗାନ୍ଧିଜୀ ଏହି ସମୟରେ ଜନସାଧାରଣଙ୍କ ନେତୃତ୍ୱ ନେଇ ଲୋକଙ୍କର ଆନ୍ଦୋଳନକୁ ଅହିଂସା ମାର୍ଗରେ ଚଳାଇଲେ । 'ରାଓଲେଟ' ଆଇନ ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ ସାରା ଦେଶରେ ୧୯୧୯ ସାଲ ଅପ୍ରେଲ ମାସ ୬ ତାରିଖ ଦିନ ହରତାଳ ପାଳନ କରିବାକୁ ହେବ ବୋଲି ଗାନ୍ଧିଜୀ ନିର୍ଦ୍ଦେଶ ଦେଇଥିଲେ । ଏଥିରେ ଭାରତରେ ଥିବା ବ୍ରିଟିଶ ଶାସକମାନଙ୍କର ମୁଣ୍ଡ ଏପରି ଭାବରେ ବିଗିଡି ଗଲା ଯେ, ସେମାନେ ଅନେକ ସ୍ଥାନରେ ନିରସ୍ତ୍ର ଜନତା ଉପରକୁ ଗୁଳି ଚଳାଇ ବହୁ ଲୋକଙ୍କୁ ମାରିପକାଇଲେ ।

ପଞ୍ଜାବର ଅମୃତସରଠାରେ ଯେଉଁ ହତ୍ୟାକାଣ୍ଡ ଘଟିଥିଲା, ତାହା ଅତି ନୃଶଂସ । ଲୋକେ ରାମଲୀଳା ଉତ୍ସବ ଦେଖିବାପାଇଁ ଜାଲିଆନାୱାଲାବାଗ ବୋଲି ଗୋଟିଏ ସ୍ଥାନରେ ରୁଣ୍ଡହୋଇଥିଲେ । ଏହି ସ୍ଥାନରେ ତିନି ପାଖରେ ଘର ଥିଲା । ଭିତରକୁ ଯିବାପାଇଁ କେବଳ ଗୋଟିଏ ବାଟ । ଜେନେରାଲ ଡାୟାର ନାମକ ଜଣେ ଗୋରା ସୈନ୍ୟ ଏହି ବାଟ ମୁହଁରେ ମେସିନଗନ ରଖି ଗୁଳି ଚଳାଇଲେ । ତାହା ଫଳରେ ସେଠାରେ ବହୁ ଲୋକ ମରି-ପଡ଼ିଲେ । ଏ ହତ୍ୟାକାଣ୍ଡ ଖବର ଦେଶର ଚାରିଆଡ଼େ ବ୍ୟାପିଗଲା । ଲୋକେ ଉତ୍ତ୍ୟକ୍ତ ହେଲେ । ସେମାନଙ୍କୁ ଦବାଇବା ପାଇଁ ନାନା

ଅତ୍ୟାଚାର ଚାଲିଲା । ପଞ୍ଜାବ ପ୍ରଦେଶରେ ବ୍ରିଟିଶ ସରକାର ସାମରିକ ଆଇନ ଜାରିକଲେ । ଏ ଆଇନ ବଳରେ ସେଠାରେ ଶାସନ ସୈନ୍ୟମାନଙ୍କ ହାତରେ ରହିଲା । ଏହା ଫଳରେ ଅତ୍ୟାଚାରର ସୁଅ ଚାଲିଲା । ବହୁତ ଲୋକଙ୍କୁ ଗୁଳିକରି ମାରିଦିଆଗଲା । ଶହ ଶହ ଲୋକ ଫାଶୀଖୁଣ୍ଟରେ ଝୁଲିଲେ । ହଜାର ହଜାର ଲୋକ ଜେଲ୍ ଭୋଗିଲେ । ଇଂରେଜ ସରକାରଙ୍କ ଅତ୍ୟାଚାର ବଢ଼ିବା ସଙ୍ଗେ ସଙ୍ଗେ ସତ୍ୟାଗ୍ରହ ଆନ୍ଦୋଳନ ମଧ୍ୟ ବଢ଼ିଲା । ଗାନ୍ଧିଜୀ ଯେଉଁ ଅହିଂସା ଓ ତ୍ୟାଗ କଥା ପ୍ରଚାର କରିଥିଲେ ତାହା ଲୋକଙ୍କ ମନକୁ ବିଶେଷ ଭାବରେ ପ୍ରଭାବିତ କଲା ।

ପଞ୍ଜାବ ଅତ୍ୟାଚାରର ପ୍ରତିବାଦ କରି ଗାନ୍ଧିଜୀ ଇଂରେଜ ସରକାରଙ୍କ ସହିତ ସମ୍ପର୍କ ତୁଟାଇଦେଲେ । ବୁଅର ଯୁଦ୍ଧ, ଜୁଲୁ ବିପ୍ଳବ ଆଦି ବିପଦବେଳେ ଗାନ୍ଧିଜୀ ସାହାଯ୍ୟ କରିଥିବାରୁ ବ୍ରିଟିଶ ସରକାର ତାଙ୍କୁ ଯେଉଁ ପଦକ ଓ ପଦବୀ ଦେଇଥିଲେ, ବଡ଼ଲାଟଙ୍କ ପାଖକୁ ଖଣ୍ଡେ ଚିଠି ଲେଖି ସେ ତାହା ଫେରାଇଦେଲେ । ଏ ଚିଠିରେ ସରକାରଙ୍କୁ ସେ 'ସଇତାନ' ସରକାର ବୋଲି ଲେଖିଥିଲେ । ଏହି ସମୟରୁ ଭାରତରେ ସ୍ୱାଧୀନତା ସଂଗ୍ରାମ ଗୋଟିଏ ନୂଆ ବାଟ ଧରିଲା ।

ଯେଉଁ ଜାତୀୟ କଂଗ୍ରେସର ନାମ ଶୁଣିଲେ ବ୍ରିଟିଶ ସରକାର ଛାନିଆ ହୋଇଯାଉଥିଲେ ଗାନ୍ଧିଜୀଙ୍କ ଯୋଗଦାନ ପୂର୍ବରୁ ତାହା ମାନ୍ଦାଦଳଆଙ୍କର ଗୋଟିଏ ଅନୁଷ୍ଠାନ ଥିଲା । ବ୍ରିଟିଶ ସରକାରଙ୍କ ପାଖରେ ଗୁହାରି କରିବା, ଆବେଦନ, ନିବେଦନ କରିବା, ଭାରତବାସୀଙ୍କୁ ଅଧିକ ଚାକିରି ମିଳୁବୋଲି ପ୍ରାର୍ଥନା କରିବା ଏ ଅନୁଷ୍ଠାନର କାମ ଥିଲା । ଗାନ୍ଧିଜୀଯୋଗ ଦେବା ପରେ କଂଗ୍ରେସର ମାନ୍ତି ପୂରାପୂରି

ବଦଳି ଯାଇଥିଲା । ନ୍ୟାୟସଙ୍ଗତ ଓ ଶାନ୍ତିପୂର୍ଣ୍ଣ ଉପାୟରେ ଭାରତ-ବାସୀଙ୍କ ଦ୍ୱାରା ସ୍ୱରାଜ୍ୟଲାଭ ଏ ଅନୁଷ୍ଠାନର ଉଦ୍ଦେଶ୍ୟ ହେଲା । ଏହି ଅନୁଷ୍ଠାନ ଜରିଆରେ ଗାନ୍ଧିଜୀଙ୍କ ନେତୃତ୍ୱରେ ୧୯୨୧ ସାଲରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଗାନ୍ଧିଜୀଙ୍କ ନିର୍ଦ୍ଦେଶ ମାନି ଅସଂଖ୍ୟ ଭାରତବାସୀ ବିଦେଶୀ ଦ୍ରବ୍ୟ ବର୍ଜନ କରି ସ୍ୱଦେଶୀ ଜିନିଷ ବ୍ୟବହାର କଲେ । ବିଦେଶୀ ସରକାର ଏଥିରେ ଆତଙ୍କିତ ହୋଇ ଶହ ଶହ ଲୋକଙ୍କୁ ଜେଲରେ ଭର୍ତ୍ତିକରିଦେଲେ ।

ରାଜନୀତି କ୍ଷେତ୍ରରେ ଅହିଂସା ଗୋଟିଏ ନୂଆ କଥା ଥିଲା । ଲୋକେ ଏ ବିଷୟ ଭଲ ରୂପେ ବୁଝି ନ ଥିଲେ; ସେ ଅନୁସାରେ ଚଳିବାରେ ଅଭ୍ୟସ୍ତ ହୋଇ ନ ଥିଲେ । ଗାନ୍ଧିଜୀଙ୍କ ନିର୍ଦ୍ଦେଶ ମାନି ଭାରତର କୋଟି କୋଟି ଲୋକ ଚଳିଲେ ମଧ୍ୟ ଉତ୍ତର ପ୍ରଦେଶରେ ଚୌରିଚୌରା ଗାଁର ଗୋଟିଏ ଥାନାରେ ଜନତା ନିଆଁ ଲଗାଇ ପୋଲିସ କର୍ମଚାରୀମାନଙ୍କୁ ସେଥିରେ ପୋଡ଼ି ମାରି ପକାଇଲେ । ସେତେବେଳେ ବର୍ଦ୍ଦୋଲିଠାରେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରିବା ପାଇଁ ସେଠାରେ ଲୋକେ ତିଆରି ହୋଇ ରହିଥିଲେ । ଗାନ୍ଧିଜୀଙ୍କଠାରୁ ନିର୍ଦ୍ଦେଶ ପାଇଲେ ଏ ଆନ୍ଦୋଳନ ଆରମ୍ଭ ହୋଇ-ଥାଆନ୍ତା । ସେତେବେଳେ ଅସହଯୋଗ ଆନ୍ଦୋଳନ ଏପରି ପ୍ରବଳ ହୋଇଥିଲା ଯେ, ତାହା ନିଶ୍ଚୟ ସଫଳ ହେବ ବୋଲି ସମସ୍ତେ ମନେ କରୁଥିଲେ । କିନ୍ତୁ ଗାନ୍ଧିଜୀ ଦେଖିଲେ ଚୌରିଚୌରାରେ ଅହିଂସା ରହିଲା ନାହିଁ । ଲୋକେ ଅହିଂସା ସତ୍ୟାଗ୍ରହ ପାଇଁ ପ୍ରସ୍ତୁତ ହୋଇ ନାହାନ୍ତି ବୋଲି ଘୋଷଣା କରି ସେ ଅସହଯୋଗ ଆନ୍ଦୋଳନ ବନ୍ଦ କରିଦେଲେ ଓ ଚୌରିଚୌରା ହିଂସାକାଣ୍ଡ ପାଇଁ ମୁଖ୍ୟତଃ ସେ ଦାୟୀ ବୋଲି ମନେ କରି ଏହାର ପ୍ରାୟଶ୍ଚିତ୍ତ ପାଇଁ କିଛି ଦିନ ଅନଶନ କଲେ ।

ଆନ୍ଦୋଳନ କମିଯିବାର ସୁଯୋଗ ନେଇ ଇଂରେଜ ସରକାର ୧୯୨୨ରେ ଗାନ୍ଧିଜୀଙ୍କୁ ଗିରଫ୍ କରି ୬ ବର୍ଷ ଜେଲଦଣ୍ଡ ଦେଲେ । ସେହି ସମୟରେ ଭାରତର ନାନା ସ୍ଥାନରେ ଶହ ଶହ ନେତା ଓ କର୍ମୀ ଜେଲରେ ବନ୍ଦୀ ହେଲେ । ପୁନା ନିକଟରେ ଜେରବାଡ଼ା ଜେଲରେ ତାଙ୍କୁ ରଖାଯାଇଥିଲା । ବନ୍ଦୀ ଅବସ୍ଥାରେ ଗାନ୍ଧିଜୀଙ୍କ ପେଟରେ ଏପେଣ୍ଡିସାଇଟିସ୍ ରୋଗ ହେଲା । ଏ ରୋଗ ଭଲ ହେବାପାଇଁ ପେଟ କଟା ହେଲା । ଏହା ପରେ ୧୯୨୪ ସାଲରେ ବ୍ରିଟିଶ ସରକାର ତାଙ୍କୁ ଜେଲରୁ ମୁକ୍ତ ଦେଲେ ।

ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଏକତା ନ ରହିଲେ ସ୍ୱରାଜ୍ୟ ହୋଇପାରିବ ନାହିଁ ବୋଲି ଗାନ୍ଧିଜୀ ମୂଳରୁ ପ୍ରଚାର କରିଥିଲେ । ଦୁଇ ସମ୍ପ୍ରଦାୟର ଲୋକ ଏକତ୍ର ହୋଇ ସ୍ୱାଧୀନତା ଆନ୍ଦୋଳନ ଚଳାଇବାରୁ ସରକାର ଡରିଯାଇଥିଲେ । ତେଣୁ ଏ ଦୁହିଁଙ୍କ ଭିତରେ ଭେଦଭାବ ସୃଷ୍ଟି କରିବାପାଇଁ ଇଂରେଜମାନେ ବରାବର ଚେଷ୍ଟା ଚଳାଇଲେ । ସେମାନେ ଭାରତ ଛାଡ଼ି ଯିବା ସମୟରେ ଏ ଦେଶକୁ ଭାରତ, ପାକିସ୍ଥାନ—ଦୁଇ ଭାଗରେ ବାଣ୍ଟି-ଦେଇଥିଲେ ।

ଅସହଯୋଗ ଆନ୍ଦୋଳନ ସଫଳ ହୋଇଯିବ, ଏ କଥା ଭାବି ଇଂରେଜ ସରକାର ପ୍ରବଳ ଭାବରେ ଭେଦନୀତି ଚଳାଇଲେ । ଏହି କାରଣରୁ ୧୯୨୪ରେ କୋହାଟରେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ଲଗିଲା । ଗାନ୍ଧିଜୀ ଏ ଭେଦଭାବର ପ୍ରତିକାର ପାଇଁ ୨୧ ଦିନ ଅନଶନ କରିଥିଲେ । ଏହା ଫଳରେ ସେ ସମୟରେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ବନ୍ଦ ହୋଇଯାଇଥିଲା ।

୧୯୨୮ ରେ ଇଂରେଜ ସରକାର ସାଇମନ୍ କମିଶନ୍ ନାମରେ ଗୋଟିଏ କମିଶନ ଭାରତକୁ ପଠାଇଲେ । ଶାସନ

ସଂସ୍କାର କରି ଏ ଦେଶକୁ କେଉଁ କେଉଁ ଅଧିକାର ଦେଲେ ଲୋକେ ସନ୍ତୁଷ୍ଟ ହେବେ, ଏହା ବିଗ୍ଭର କରି ଇଂରେଜ ସରକାରଙ୍କୁ ପରାମର୍ଶ ଦେବା କମିଶନ୍‌ର କାମ ଥିଲା । ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ କଂଗ୍ରେସ ଏହି କମିଶନ୍‌କୁ ପୂର୍ଣ୍ଣରୂପେ ବର୍ଜନ କରିଥିଲେ ।

ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତି ଭାରତବାସୀଙ୍କ ଲକ୍ଷ୍ୟ ବୋଲି ୧୯୨୯ରେ ଲାହୋର କଂଗ୍ରେସରେ ସ୍ଥିର ହୋଇଗଲା । ସରକାର ଦେଖିଲେ, ଭାରତର ଦାବୀ କ୍ରମେ କ୍ରମେ ପ୍ରବଳ ହେଉଛି । ବଳ ପ୍ରୟୋଗ କରି ଶାସନ କରିବା ଆଉ ସମ୍ଭବ ନାହିଁ ବା ଏ ଦେଶର ଶାସନ ବେଶି ଦିନ ତାଙ୍କ ହାତରେ ରହିବ ନାହିଁ । ତେଣୁ କୂଟନୀତି ପ୍ରୟୋଗ କରିବା ପାଇଁ ସେମାନେ ବ୍ୟବସ୍ଥା କଲେ । ତାହା ଫଳରେ ଲଣ୍ଡନଠାରେ ଗୋଟିଏ ଗୋଲଟେବୁଲ ବୈଠକର ଆୟୋଜନ ହେଲା । ଏ ଦେଶର ଯେଉଁ ବଡ଼ଲୋକମାନେ ସରକାର ସପକ୍ଷରେ ଥିଲେ, ସେମାନଙ୍କୁ ନେଇ ବୈଠକ ବସିଲା ।

ଗାନ୍ଧିଜୀ କଂଗ୍ରେସର ଏକମାତ୍ର ପ୍ରତିନିଧିରୂପେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗଦେଇ ସ୍ୱରାଜ ଦାବୀ ଆଗତ କଲେ; କିନ୍ତୁ ଆଗା ଖାଁ, ଜିନ୍ନା ଏବଂ ଆମ୍ବେଦକର୍‌ଙ୍କ ଚକ୍ରାନ୍ତ ଫଳରେ ତାଙ୍କର ସେ ଦାବୀ ବ୍ୟର୍ଥ ହୋଇଗଲା ।

ଗୋଲଟେବୁଲ ବୈଠକରୁ ଗାନ୍ଧିଜୀ ଖାଲି ହାତରେ ଫେରି ବମ୍ବେରେ ପଦାର୍ପଣ କରିବା ସଙ୍ଗେ ସଙ୍ଗେ ବ୍ରିଟିଶ ସରକାର ତାଙ୍କୁ ବନ୍ଦୀ କରିଥିଲେ । ତାହା ପୂର୍ବରୁ ବଡ଼ ବଡ଼ କଂଗ୍ରେସ ନେତାମାନଙ୍କୁ ଗିରଫ କରାଯାଇଥିଲା । ପୁଣି ଥରେ ଦେଶସାରା

ସତ୍ୟାଗ୍ରହ ଆନ୍ଦୋଳନ ବ୍ୟାପିଗଲା । ଲକ୍ଷାଧିକ ଲୋକ ଜେଲ ଗଲେ । ଏଥର ମଧ୍ୟ କିଛି ଦିନ ପରେ ଗାନ୍ଧିଜୀଙ୍କୁ ଜେଲରୁ ମୁକ୍ତ କରିଦିଆଗଲା ।

୧୯୩୫ ସାଲରେ ଇଂରେଜ ସରକାର ଭାରତରେ ଆଉ ଗୋଟିଏ ନୂଆ ଶାସନ ସଂସ୍କାର ଚଳାଇଲେ ।

୧୯୩୭ରେ ଆଠଟି ପ୍ରଦେଶରେ କଂଗ୍ରେସ ଶାସନ ଚାଲିଲା । ସଙ୍ଗେ ସଙ୍ଗେ ଗଡ଼ଜାତଗୁଡ଼ିକରେ ମଧ୍ୟ ପ୍ରଜା ଆନ୍ଦୋଳନ ଲାଗିଲା । ଗାନ୍ଧିଜୀ ଅଲଗା ରହି ମଧ୍ୟ ଆନ୍ଦୋଳନକୁ ଚଳାଇବା ପାଇଁ ପରାମର୍ଶ ଦେଉଥିଲେ ।

୧୯୩୯ ସାଲରେ ଇଂଲଣ୍ଡ ଓ ଜର୍ମାନୀ ଭିତରେ ଦ୍ୱିତୀୟ ମହାଯୁଦ୍ଧ ଲାଗିଲା । ଭାରତର ଲୋକପ୍ରତିନିଧିମାନଙ୍କୁ ନ ପଚାରି ଇଂରେଜ ସରକାର ଏ ଦେଶକୁ ଯୁଦ୍ଧରେ ପୂରାଇଦେଲେ । ଏହାର ପ୍ରତିବାଦ କରି କଂଗ୍ରେସ ପକ୍ଷର ସବୁ ମନ୍ତ୍ରୀ ଇସ୍ତଫା ଦେଇ ପ୍ରାଦେଶିକ ଶାସନରୁ ଅଲଗା ହୋଇଗଲେ । ଯୁଦ୍ଧରେ ଭାରତବାସୀଙ୍କ ସମର୍ଥନ ନାହିଁ ବୋଲି ଦେଖାଇବା ପାଇଁ ଗାନ୍ଧିଜୀ ସେ ବର୍ଷର ଶେଷ ଆଡ଼କୁ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କଲେ । ବର୍ଷେକାଳ ଆନ୍ଦୋଳନ ଚାଲିଲା । ପୃଥିବୀର ଲୋକେ ବୁଝିପାରିଲେ, ଏହି ଯୁଦ୍ଧରେ ଭାରତ-ବାସୀଙ୍କ ସମର୍ଥନ ନାହିଁ । ଏହା ପରେ ଗାନ୍ଧିଜୀ ଆନ୍ଦୋଳନ ବନ୍ଦ କରିଥିଲେ । ବ୍ରିଟିଶ ସରକାର ମଧ୍ୟ ଜେଲରେ ବନ୍ଦୀ ଥିବା କଂଗ୍ରେସ ନେତା ଓ କର୍ମୀମାନଙ୍କୁ ମୁକ୍ତ ଦେଲେ ।

୧୯୪୨ ସାଲ ଅଗଷ୍ଟ ମାସ ୮ ତାରିଖ ଦିନ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ କଂଗ୍ରେସ ଭାରତ-ଛାଡ଼ ପ୍ରସ୍ତାବ ଗ୍ରହଣ କଲା । ସେ ବଡ଼ଲାଟଙ୍କ ସହିତ ସାକ୍ଷାତ୍ କରି ତାଙ୍କୁ ସେ ସବୁ ବିଷୟ ବୁଝାଇ-

ଦେବେ ବୋଲି ସ୍ଥିର ହେଲା; କିନ୍ତୁ ଇଂରେଜ ସରକାର ପରଦିନ ସକାଳୁ ଗାନ୍ଧିଜୀ ଓ ସବୁ ବଡ଼ ବଡ଼ ନେତା ଏବଂ କର୍ମୀଙ୍କୁ ଗିରଫ କରି ବନ୍ଦୀ କଲେ । ଏହା ଫଳରେ ଲୋକେ ଉତ୍ତ୍ୟକ୍ତ ହୋଇ ଭୁରିଆଡ଼େ ସଭା ପଟୁଆର କଲେ । ଲୋକଙ୍କର ଏ ପ୍ରତିବାଦକୁ ଦବାଇବା ପାଇଁ ଭାରତର ସବୁ ପ୍ରଦେଶରେ ଗୁଳି ଚାଲିଲା ।

ଗାନ୍ଧିଜୀଙ୍କୁ ପୁନାଠାରେ ଥିବା ଆଗା ଖାଁଙ୍କର ପ୍ରାସାଦରେ ସରକାର ବନ୍ଦୀ କରି ରଖିଥିଲେ; କିନ୍ତୁ ସେ କେଉଁଠାରେ ଅଛନ୍ତି ଲୋକଙ୍କୁ ଜାଣିବାକୁ ଦିଆଗଲା ନାହିଁ । ନେତାମାନେ ଜେଲରେ ଥିବା ସମୟରେ ଇଂରେଜ ସରକାର ଆନ୍ଦୋଳନରେ ଘଟିଥିବା ଧ୍ୱଂସାତ୍ମକ କାମପାଇଁ କଂଗ୍ରେସକୁ ଦାୟୀ କରି ପ୍ରଚାର କଲେ । ଗାନ୍ଧିଜୀ ଏହାର ପ୍ରତିବାଦ କରି ବଡ଼ଲାଟଙ୍କୁ ବାରମ୍ବାର ପତ୍ର ଦେଲେ ମଧ୍ୟ କିଛି ଫଳ ହେଲା ନାହିଁ । ଏଥିପାଇଁ ୧୯୪୩ ସାଲ ଫେବୃୟାରୀ ମାସ ୧୦ ତାରିଖଠାରୁ ୨୧ ଦିନ ଯାଏ ଗାନ୍ଧିଜୀ ଅନଶନ ବ୍ରତ ଆରମ୍ଭ କଲେ । ଏହା ଫଳରେ ପୃଥିବୀର ଚାରିଆଡ଼େ ଚହଳ ପଡ଼ିଗଲା ।

ଆଗା ଖାଁ ପ୍ରାସାଦରେ ଗାନ୍ଧିଜୀଙ୍କ ସହିତ ବନ୍ଦୀ ଥିବା ସମୟରେ ତାଙ୍କର ସହଧର୍ମିଣୀ କସ୍ତୁରବା ୧୯୪୪ ସାଲ ଫେବୃୟାରୀ ମାସ ୨୨ ତାରିଖ ଦିନ ପ୍ରାଣତ୍ୟାଗ କଲେ । ଗାନ୍ଧିଜୀ ଏଥିରେ ବିଚଳିତ ହେଲେ ନାହିଁ ।

୧୯୪୩ ମସିହା ମଇ ମାସ ୬ ତାରିଖ ସକାଳେ ଗାନ୍ଧିଜୀଙ୍କୁ ସରକାର ମୁକ୍ତ ଦେଲେ । ସେତେବେଳେ ତାଙ୍କର ସ୍ୱାସ୍ଥ୍ୟ ନିତାନ୍ତ ଖରାପ ଥିବାରୁ ସେ କିଛି ଦିନ ବିଶ୍ରାମ କଲେ ।

ଏହି ସମୟରେ ବିଲାତ ମନ୍ତ୍ରୀପରିଷଦ ପକ୍ଷରୁ ଲର୍ଡ଼ ପ୍ୟାଥିକ ଲରେନସ, ସାର୍ ଷ୍ଟାଫୋର୍ଡ଼ କ୍ରିପ୍ସ,ଜେନେରାଲ ଆଲେକ୍‌ଜାଣ୍ଡାର

ପ୍ରତିନିଧିରୂପେ ଭାରତକୁ ଆସିଥିଲେ । ସେମାନେ ଏ ଦେଶରୁ ଇଂରେଜମାନେ ଚାଲିଯିବା ବିଷୟରେ କଥାବାର୍ତ୍ତା ଆରମ୍ଭ କଲେ । ଏ କଥାବାର୍ତ୍ତା ଫଳରେ ଦେଶ ତିନି ଖଣ୍ଡ ହୋଇ ଖଣ୍ଡେ ମୁସଲମାନ ଖଣ୍ଡେ ହିନ୍ଦୁ ଓ ଖଣ୍ଡେ ରଜାରଜୁଡ଼ାଙ୍କ ହାତରେ ରହିଯିବ ବୋଲି ଆଶଙ୍କା ହେବାରୁ ତାଙ୍କ ପ୍ରସ୍ତାବରେ କଂଗ୍ରେସ କିମ୍ବା ଗାନ୍ଧିଜୀ ରାଜି ହେଲେ ନାହିଁ ।

ଏହି ସମୟରେ ପାକିସ୍ଥାନ ସୃଷ୍ଟି କରିବା ପାଇଁ ଜିନ୍ନାଙ୍କ ନିର୍ଦ୍ଦେଶରେ ଦଳେ ମୁସଲମାନ ହଣାକଟା ଲଗାଇଦେଲେ । କଲିକତା ଏବଂ ନୂଆଖାଲିରେ ଶହ ଶହ ଲୋକ ମଲେ ଓ କୋଟି କୋଟି ଟଙ୍କାର ସମ୍ପତ୍ତି ଲୁଟତରାଜ ହୋଇଗଲା ।

ବଡ଼ଲାଟ ଲର୍ଡ଼ ମାଉଣ୍ଟବାଟେନ୍‌ଙ୍କ ମଧ୍ୟସ୍ଥତାରେ କଂଗ୍ରେସ ଓ ମୁସଲମ୍‌ଲିଗ୍ ଭିତରେ ଚୁକ୍ତି ହେଲା । ଏହା ଫଳରେ ଏ ପ୍ରାଚୀନ ଦେଶ ଦୁଇ ଖଣ୍ଡ ହୋଇ ପାକିସ୍ଥାନ ଓ ଭାରତ ଦୁଇ ଭାଗରେ ବିଭକ୍ତ ହେବ ବୋଲି ବ୍ୟବସ୍ଥା ହେଲା । ୧୯୪୭ ସାଲ ଅଗଷ୍ଟ ମାସ ୧୫ ତାରିଖ ଦିନ ଇଂରେଜମାନେ ଭାରତ ଛାଡ଼ି ବାହାରିଯିବେ ବୋଲି ଘୋଷଣା କରାଗଲା ।

ସେତେବେଳେ କଲିକତାରେ ହିନ୍ଦୁ ମୁସଲମାନ ହଣାକଟା ହେଉଥିଲା । ସେଠାରେ ଶାନ୍ତି ସ୍ଥାପନ କରିବା ପାଇଁ ଗାନ୍ଧିଜୀ ରହିଥିଲେ । ଅଗଷ୍ଟ ମାସ ୧୪ତାରିଖ ରାତି ୧୨ଟା ସମୟରେ ଇଂରେଜ-ମାନେ ଏ ଦେଶ ଛାଡ଼ି ବାହାରିଗଲେ;କିନ୍ତୁ ଯେଉଁ ହିନ୍ଦୁ ମୁସଲମାନ ହାଣକଟା ବର୍ଷକ ପୂର୍ବରୁ ଭାରତର ନାନା ସ୍ଥାନରେ ଲାଗିଥିଲା, ସେ ନିଆଁ ସେତେବେଳ ପର୍ଯ୍ୟନ୍ତ ଲିଭି ନ ଥିଲା । ଦୁଇ ସମ୍ପ୍ରଦାୟ ମଧ୍ୟରେ ଶାନ୍ତି ସ୍ଥାପନ କରିବା ଗାନ୍ଧିଜୀଙ୍କର ପ୍ରଧାନ କାମ ହେଲା ।

କଲିକତାରେ ସାମ୍ପ୍ରଦାୟିକ ବନ୍ଧନର ନିଆଁ ଲିଭିଲାବେଳକୁ ପଞ୍ଜାବରେ ତାହା ଅଧିକ ବେଗରେ ଜଳୁଥିଲା; ତେଣୁ ଗାନ୍ଧିଜୀ ସେ ପ୍ରଦେଶକୁ ଯିବାକୁ ବାହାରିଲେ । ସେ ଦିଲ୍ଲୀରେ ପହଞ୍ଚିବା ପରେ ସେଠାରେ ହାଣକଟା ଆରମ୍ଭ ହେଲା । ଅବସ୍ଥା ଅସମ୍ଭାଳ ହେବାରୁ ଗାନ୍ଧିଜୀ ୧୯୪୮ ସାଲ ଜାନୁଆରୀ ମାସ ୩ ତାରିଖ ଦିନ ଆମରଣ ଅନଶନ ଆରମ୍ଭ କଲେ । ହିନ୍ଦୁ ମୁସଲମାନ ଦୁଇ ସମ୍ପ୍ରଦାୟର ନେତାମାନେ ଶାନ୍ତି ସ୍ଥାପନ ପାଇଁ ପ୍ରତିଶ୍ରୁତି ଦେବାରୁ ସେ ୧୮ ତାରିଖ ଦିନ ଉପବାସ ଭାଙ୍ଗିଲେ । ୨୦ ତାରିଖ ଦିନ ସଭାରେ ପ୍ରାର୍ଥନା କରୁଥିବାବେଳେ ଜଣେ ଆତତାୟୀ ତାଙ୍କ ଉପରକୁ ବୋମା ଫିଙ୍ଗିଲା, କିନ୍ତୁ ସେଥିରେ ଗାନ୍ଧିଙ୍କର କିଛି କ୍ଷତି ହୋଇ ନ ଥିଲା ।

୧୯୪୮ ସାଲ ଜାନୁୟାରୀ ମାସ ୩୦ ତାରିଖ ଶୁକ୍ରବାର ୫ଟା ପରରୁ ଗାନ୍ଧିଜୀ ବିରଳା ଭବନ ପ୍ରାର୍ଥନା ସଭାକୁ ବାହାରିଲେ । ତାଙ୍କର ଦୁଇ ପାଖରେ ନାତୁଣୀ ଓ ନାତୁଣୀବୋହୂ ଥିଲେ । ଏହି ସମୟରେ ଜଣେ ଦୁର୍ଦ୍ଦାନ୍ତ ଯୁବକ ପିସ୍ତଲରୁ ତାଙ୍କ ଉପରକୁ ଗୁଳି ଚଳାଇଲା । ଗୋଟିଏ ଗୁଳି ତାଙ୍କ ଛାତି ଉପରେ ବାଜିଲା । ଦୁଇଟି ଗୁଳି ତଳପେଟକୁ ବିଦ୍ଧ କଲା । ସଙ୍ଗେ ସଙ୍ଗେ ସେ ଢଳିପଡ଼ିଲେ । ଭାରତର ଆଲୋକ ଲିଭିଗଲା ।

ଏହିପରି ଭାବରେ ମହାତ୍ମାଙ୍କର ତିରୋଧାନ ଘଟିଲା । ସେ ମହାପୁରୁଷ ଥିଲେ । ମରି ମଧ୍ୟ ସେ ଅମର ହୋଇଗଲେ ।

—*—

# କସ୍ତୁରବା

ପୁଣ୍ୟଭୂମି ଭାରତବର୍ଷରେ ଯୁଗେ ଯୁଗେ ସୀତା, ସାବିତ୍ରୀଙ୍କ ପରି ନାରୀ ଜନ୍ମଗ୍ରହଣ କରିଛନ୍ତି । ଶାସ୍ତ୍ର ପୁରାଣରେ ସେମାନଙ୍କର କୀର୍ତ୍ତି ଅଲିଭା ଅକ୍ଷରରେ ଲେଖାହୋଇଛି । ଘରେ ଘରେ ସେମାନଙ୍କର ଆଦର୍ଶ ପୂଜାପାଉଛି । କେବଳ ପୂର୍ବକାଳରେ ସେମାନେ ଜନ୍ମ ହୋଇଥିଲେ ବୋଲି କହିବା ଠିକ୍ ହେବ ନାହିଁ । ଯୁଗେ ଯୁଗେ ସେମାନେ ଜନ୍ମ ହେଉଛନ୍ତି ଓ ଏ ଦେଶର ସଭ୍ୟତାକୁ ଉଜ୍ଜ୍ୱଳ କରି ରଖୁଛନ୍ତି ।

ଏ ଦେଶକୁ ଇଂରେଜମାନେ ଆସିବା ସଙ୍ଗେ ସଙ୍ଗେ ଭାରତୀୟ ସଭ୍ୟତାରେ ନାନା ଅଦଳବଦଳ ଆରମ୍ଭ ହେଲା । ଦଳେ ଲୋକ ଇଂରେଜ ଜାତିକୁ ଆଦର୍ଶ ବୋଲି ମନେ କଲେ । ବିଲାତର ନାରୀମାନେ ସେଠାରେ ଯେଉଁ ଧରଣରେ ଚଳନ୍ତି; ଭାରତୀୟ ନାରୀମାନେ ସେହିପରି ଭାବରେ ଚଳିବା ଉଚିତ ବୋଲି ନାନା ଆନ୍ଦୋଳନ ହୋଇଥିଲା । ତାହା ଫଳରେ ଯେଉଁମାନେ ଇଂରେଜୀ ଶିକ୍ଷାର ସୁବିଧା ପାଇଲେ, ସେମାନେ ନିଜ ଘର ଓ ପରିବାରର ଲୋକଙ୍କୁ ବିଦେଶୀ ସଭ୍ୟତାକୁ ଟାଣିନେବା ପାଇଁ ନାନା ଉଦ୍ୟମ କରୁଥିଲେ । ଭାରତର ପୁରାତନ ଯୁଗର ସଭ୍ୟତା ଏତେ ଟାଣ ଯେ କୌଣସି ବିଦେଶୀ ଭାବଧାରା ସେଥିରେ ବିଶେଷ ପରିବର୍ତ୍ତନ ଆଣିପାରେ ନାହିଁ ।

କସ୍ତୁରବାଙ୍କ ପରି ଜଣେ ଜଣେ ମହୀୟସୀ ନାରୀ ଏ ଦେଶରେ ଜନ୍ମ ହୋଇ ଦେଶର ସଭ୍ୟତାକୁ ଉଜ୍ଜ୍ୱଳ କରି-ଯାଇଛନ୍ତି । କସ୍ତୁରବା ଶ୍ରୀମତୀ ସରୋଜିନୀ ନାଇଡୁଙ୍କ ପରି କବି ବା



ଉଚ୍ଚଶିକ୍ଷିତା ନ ଥିଲେ କିମ୍ବା ପଣ୍ଡିତ ମୋତିଲାଲଙ୍କ କନ୍ୟା ଶ୍ରୀମତୀ ବିଜୟଲକ୍ଷ୍ମୀଙ୍କ ପରି ଆଧୁନିକ ସଭ୍ୟତାର ଆଲୋକ ପାଇ ନ ଥିଲେ । ସାଧାରଣ ଘରର ଘରଣୀ ପରି ସେ ଥିଲେ ଭାରତୀୟ ନାରୀମାନଙ୍କ ପ୍ରତିନିଧି; କିନ୍ତୁ ତାଙ୍କ ଜୀବନକାଳରେ ସେ ପ୍ରତ୍ୟେକ ଭାରତ-ବାସୀଙ୍କର ମାତାରୂପେ ପୂଜା ପାଉଥିଲେ ।

କସ୍ତୁରବା ଗୁଜୁରାଟର ପୋରବନ୍ଦରଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଯେଉଁ ବର୍ଷ ଜନ୍ମ, ଗାନ୍ଧିଜୀ ମଧ୍ୟ ସେହି ବର୍ଷ ଜନ୍ମଗ୍ରହଣ କରିଥିଲେ । ସେ ଗାନ୍ଧିଜୀଙ୍କ ଠାରୁ ୬।୦ ମାସ ବଡ଼ । କସ୍ତୁରବାଙ୍କ ପିତାଙ୍କ ନାମ ଗୋକୁଳ ଦାସ ଶାଙ୍କେଜୀ । ସେ ଜଣେ ଧନୀ ବ୍ୟବସାୟୀ ଥିଲେ । ଗାନ୍ଧିଜୀଙ୍କ ପିତା ପୋରବନ୍ଦରର ଦେବାନ ଥିବା ସମୟରେ ଗୋକୁଳ ଦାସଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତା ଥିଲା । ଏ ବନ୍ଧୁତାକୁ ଦୃଢ଼ କରିବା ପାଇଁ ଦୁହେଁ ପୁଅ ଝିଅଙ୍କ ବିବାହ ଦେଇଥିଲେ । ଗାନ୍ଧିଜୀ ଓ କସ୍ତୁରବାଙ୍କୁ ଯେତେବେଳେ ୧୩ ବର୍ଷ ବୟସ ସେତେବେଳେ ସେମାନଙ୍କର ବିବାହ ହୋଇଥିଲା । କାଥିଆବାଡ଼ର ବଣିଆଙ୍କ ଭିତରେ ବାଲ୍ୟ ବିବାହ ପ୍ରଥା ବହୁକାଳରୁ ପ୍ରଚଳିତ । ଗାନ୍ଧିଜୀ, ତାଙ୍କ ବଡ଼ ଭାଇ ଓ ତାଙ୍କ ଦାଦପୁଅ ଭାଇ ଏକ ସମୟରେ ବିବାହ ହୋଇଥିଲେ ।

ପିଲାଦିନୁ କସ୍ତୁରବା ପାଠ ପଢ଼ି ନ ଥିଲେ । ଆଜିକାଲି ପାଠୁଆ ସ୍ତ୍ରୀଲୋକଙ୍କ ପରି ସେ ନୂଆଢଙ୍ଗର ଚାଲିଚଳନ ଜାଣି ନ ଥିଲେ । ହିନ୍ଦୁଘରର ବୋହୂମାନେ ଘର ପ୍ରଚଳିତ ପ୍ରଥା ଅନୁସାରେ ତାଙ୍କର କର୍ତ୍ତବ୍ୟ କରିଥାଆନ୍ତି । ସେହିପରି ଭାବରେ କସ୍ତୁରବା ଆଜୀବନ ନିଜର କର୍ତ୍ତବ୍ୟ କରିଥିଲେ ।

ଗାନ୍ଧିଜୀ ସେତେବେଳେ ପାଠ ପଢ଼ୁଥିଲେ । ପାଠୋଈ ବୋହୂଟିଏ ହେଲେ ଭଲ ହୁଅନ୍ତା ବୋଲି ଭାବି ସେ କସ୍ତୁରବାଙ୍କୁ ପାଠ ପଢ଼ାଇବା ପାଇଁ ବହୁତ ଚେଷ୍ଟା କଲେ । ଅକ୍ଷର ଲେଖିବା ଓ ସାଧାରଣ କେତେକ ବହି ପଢ଼ିବା ଛଡ଼ା ତାଙ୍କର ବେଶି କିଛି ଶିକ୍ଷା ହୋଇ ନଥିଲା । କିନ୍ତୁ ରାମାୟଣ, ମହାଭାରତ ଆଦି ଶାସ୍ତ୍ର ପୁରାଣ ସେ ତାଙ୍କ ମା'ଙ୍କଠାରୁ ଶୁଣି ଶୁଣି ମନେ ରଖିଥିଲେ । ସେ ନିଜକୁ ମଧ୍ୟ ସେହି ଆଦର୍ଶରେ ଗଢ଼ିଥିଲେ । ଗାନ୍ଧିଜୀ ୧୮ ବର୍ଷ ବୟସରେ ଏଣ୍ଟ୍ରାନସ ପାଶ କରି ବାରିଷ୍ଟରୀ ପଢ଼ିବା ପାଇଁ ଇଂଲଣ୍ଡକୁ ଗଲେ ।

ସେହି ବର୍ଷ ତାଙ୍କର ଗୋଟିଏ ପୁଅ ଜନ୍ମ ହୋଇଥିଲା । ସେହି ଦିନ-ଠାରୁ କସ୍ତୁରବାଙ୍କ ପଢ଼ା ବନ୍ଦ ହେଲା ।

କସ୍ତୁରବା ଆଦର୍ଶ ବୋହୂ ଥିଲେ । ତାଙ୍କ ବ୍ୟବହାର ଦେଖି ଶାଶୁଶ୍ୱଶୁର ସମସ୍ତେ ତାଙ୍କୁ ଖୁବ୍ ସୁଖ ପାଉଥିଲେ । କସ୍ତୁରବାଙ୍କର କେତେକ ମରହଟିଆ ଢଙ୍ଗ ଗାନ୍ଧିଜୀଙ୍କୁ ଆଦୌ ଭଲ ଲାଗୁ ନ ଥିଲା । ସେଥିପାଇଁ ବେଳେ ବେଳେ ଦୁହିଁଙ୍କ ଭିତରେ କଳି ଲାଗି-ଯାଉଥିଲା । ପିଲାଦିନୁଁ କସ୍ତୁରବା ବଡ଼ ଜିଦ୍‌ଖୋର ଥିଲେ । ତେଣୁ ଗାନ୍ଧିଜୀଙ୍କର ଚେଷ୍ଟା ସତ୍ତ୍ୱେ ସେ ନିଜର ପ୍ରାଚୀନ ଢଙ୍ଗକୁ ବଦଳାଇ ପାରି ନ ଥିଲେ ।

୧୮୯୧ ସାଲରେ ଇଂଲଣ୍ଡରୁ ବାରିଷ୍ଟରି ପାସ କରି ଗାନ୍ଧିଜୀ ଦେଶକୁ ଫେରିଲେ । କିଛି ଦିନ ବମ୍ବେରେ ଓକିଲାତି କରିବା ପରେ ସେ ରାଜକୋଟରେ ଆସି ରହିଲେ । କସ୍ତୁରବାଙ୍କୁ ମଧ୍ୟ ସେହିଠାରେ ରହିବାକୁ ପଡ଼ିଲା ।

କିଛି ଦିନ ପରେ ଗାନ୍ଧିଜୀ ଆଫ୍ରିକା ଗଲେ । ଡରବାନ୍‌ଠାରେ ସେ ସାହେବ ପରି ରହୁଥିଲେ । ତାଙ୍କ ଇଚ୍ଛା ଅନୁସାରେ କସ୍ତୁରବାଙ୍କୁ ପାର୍ଶିବେଶ ପିନ୍ଧିବାକୁ ପଡ଼ୁଥିଲା । ଭାରତର ସ୍ତ୍ରୀଲୋକମାନେ ସାଧାରଣତଃ ଯୋତା ପିନ୍ଧନ୍ତି ନାହିଁ । ପ୍ରଥମେ ପ୍ରଥମେ କସ୍ତୁରବାଙ୍କୁ ଯୋତା ପିନ୍ଧିବାକୁ ଅଡ଼ୁଆ ଲାଗିଲା । ସାହେବମାନେ ଟେବୁଲ ଉପରେ ଖାନା ଖାଆନ୍ତି, ହାତରେ ନ ଖାଇ କଣ୍ଟା ଚାମଚର ବ୍ୟବହାର କରନ୍ତି । ଗାନ୍ଧିଜୀ ଏପରି ଭାବରେ ଚଳିବାରୁ ସେ ମଧ୍ୟ କଣ୍ଟାଚାମଚରେ ଖାଇବାକୁ ବାଧ୍ୟ ହେଉଥିଲେ; କିନ୍ତୁ ତାଙ୍କୁ ଏ ସବୁ ଭଲ ଲାଗୁ ନ ଥିଲା ।

ଡରବାନ୍‌ରେ ବାରିଷ୍ଟରି କରିବା ସମୟରେ ଗାନ୍ଧିଜୀଙ୍କର ଜଣେ ଖ୍ରୀଷ୍ଟିୟାନ୍ କିରାଣୀ ଥିଲେ । ସେ ତାଙ୍କ ଘରେ

ରହୁଥିଲେ ଓ ଖାଉଥିଲେ । ସମସ୍ତ ସମୟରେ ତାଙ୍କର ଅଇଁଠା ବାସନ ମଧ୍ୟ କସ୍ତୁରବାଙ୍କୁ ମାଜିବାକୁ ପଡୁଥିଲା । ଏ କଥା ତାଙ୍କୁ ଭଲ ଲାଗୁ ନ ଥିଲା । ଗାନ୍ଧିଜୀ ଛୁଆଁ, ଅଛୁଆଁ, ହିନ୍ଦୁ, ଖ୍ରୀଷ୍ଟିୟାନ୍ ଆଦି ଭେଦ ମାନୁ ନ ଥିଲେ, କିନ୍ତୁ କସ୍ତୁରବାଙ୍କୁ ଏ କଥା ପସନ୍ଦ ହେଉ ନ ଥିଲା । ଗାନ୍ଧିଜୀ ତାଙ୍କୁ ଅନେକ ବୁଝାଇଲେ; କିନ୍ତୁ କିଛି ଫଳ ହେଲା ନାହିଁ । ଥରେ ଖ୍ରୀଷ୍ଟିୟାନ୍ କିରାଣୀର ଅଇଁଠା ବାସନ ମାଜିବାକୁ ରାଜି ନ ହେବାରୁ ଗାନ୍ଧିଜୀ ତାଙ୍କ ଉପରେ ରାଗିଯାଇ ଘରୁ ତଡ଼ିଦେବାକୁ ବସିଲେ; କିନ୍ତୁ ପରେ ଦୁହେଁ ଦୁହିଁଙ୍କର ଭୁଲ ବୁଝିପାରିଲେ ।

ଦକ୍ଷିଣ ଆଫ୍ରିକାରେ ଭାରତୀୟମାନଙ୍କୁ ସେଠାର ସରକାର ନିତାନ୍ତ ଖରାପ ଅବସ୍ଥାରେ ରଖିଥିଲେ । ସେଠାରେ କଳା, ଗୋରା ଭେଦ ଅତି ପ୍ରବଳ ଥିଲା । ଗୋରା ଲୋକ କଳା ଲୋକଙ୍କ ଉପରେ ନାନା ଅତ୍ୟାଚାର କରୁଥିଲେ । ଗାନ୍ଧିଜୀ ନାନା ପ୍ରକାରରେ ବୁଝାଇ ଏ ଭେଦ ଦୂର କରିବା ପାଇଁ ଉଦ୍ୟମ କଲେ । ସେଥିରେ କିଛି ଫଳ ନ ହେବାରୁ ସେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ । ଏହିଠାରେ ପ୍ରଥମେ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା ।

ସତ୍ୟାଗ୍ରହ ଆନ୍ଦୋଳନ ଚାଲିଥିବା ସମୟରେ କସ୍ତୁରବା ବଡ଼ ବେମାର ପଡିଲେ । ଡାକ୍ତରମାନେ ତାଙ୍କର ଚିକିତ୍ସା କଲେ । ତାଙ୍କ ଦେହରେ ଅସ୍ତ୍ରଚିକିତ୍ସା ହେଲା । ସେ ତାହା ଅତି ଧୈର୍ଯ୍ୟ ସହକାରେ ସହ୍ୟ କରିଥିଲେ; କିନ୍ତୁ ଏହା ପରେ ମଧ୍ୟ ରୋଗ କ୍ରମେ ବଢ଼ିଲା । ଅବସ୍ଥା ଏପରି ହେଲା ଯେ, ତାଙ୍କର ବଞ୍ଚିବାର ଆଶା ରହିଲା ନାହିଁ । ଏହି ସମୟରେ ଡାକ୍ତରମାନେ ତାଙ୍କୁ ମାଂସଝୋଳ ଓ ମଦ ଖାଇବାକୁ କହିଲେ । ଏଥିରେ କସ୍ତୁରବା ଆଦୌ ରାଜି ହେଲେ ନାହିଁ । ତାଙ୍କୁ ପ୍ରବର୍ତ୍ତାଇବା ପାଇଁ ଗାନ୍ଧିଜୀ

ନାନା ଚେଷ୍ଟା କଲେ ମଧ୍ୟ କିଛି ଫଳ ହେଲାନାହିଁ । ସେ ମରିବେ ପଛେ, ମାଂସ ଖାଇ ତାଙ୍କ ଶରୀରକୁ ଅପବିତ୍ର କରିବେ ନାହିଁ ବୋଲି ଜଣାଇଦେଲେ । ଡାକ୍ତରମାନେ ଆଉ ଚିକିତ୍ସା କରିପାରିବେ ନାହିଁ ବୋଲି କହିବାରୁ, ଡାକ୍ତରଖାନାରୁ ତାଙ୍କୁ ଫେରାଇ ଅଣାଗଲା । ଆଶ୍ଚର୍ଯ୍ୟ ବିଷୟ, କୌଣସି ଚିକିତ୍ସା ନ ହୋଇ ମଧ୍ୟ ସେ କ୍ରମେ କ୍ରମେ ଆରୋଗ୍ୟ ହେଲେ ।

ଦକ୍ଷିଣ-ଆଫ୍ରିକାରେ ସତ୍ୟାଗ୍ରହ ଆନ୍ଦୋଳନ ଚାଲିଥିବା ସମୟରେ ସେଠାରେ ସରକାର ସତ୍ୟାଗ୍ରହୀମାନଙ୍କୁ ଧରି ବନ୍ଦୀ କରୁଥିଲେ । ଆନ୍ଦୋଳନ ବଢ଼ିବାରୁ ସ୍ତ୍ରୀଲୋକମାନେ ମଧ୍ୟ ସତ୍ୟାଗ୍ରହରେ ଯୋଗଦେଲେ; କିନ୍ତୁ ଗାନ୍ଧିଜୀ କସ୍ତୁରବାଙ୍କୁ କିଛି କହିଲେ ନାହିଁ । ଦେଶ କାମରେ ସେ ପଛରେ ପଡ଼ିଯିବାର ଲୋକ ନୁହନ୍ତି । ସତ୍ୟାଗ୍ରହରେ ଯୋଗଦେବା ପାଇଁ ସେ ଗାନ୍ଧିଜୀଙ୍କୁ ଅନୁନୟ ବିନୟ କଲେ । ଗାନ୍ଧିଜୀ ଏଥିରେ ରାଜିହେବାରୁ ସେ ଆନ୍ଦୋଳନରେ ଯୋଗଦେଇ ମାଡ଼ ଖାଇବା, ଜେଲ ଯିବା ଆଦି ଅନେକ କଷ୍ଟ ସହ୍ୟ କଲେ ।

୧୯୧୫ ମସିହାରେ ଗାନ୍ଧିଜୀ ଓ କସ୍ତୁରବା ଭାରତକୁ ଫେରି ଆସିଲେ । ଦକ୍ଷିଣ-ଆଫ୍ରିକାରେ ଥିବା ଭାରତୀୟମାନଙ୍କ ଦୁର୍ଦ୍ଦଶା ତାଙ୍କୁ ବିଚଳିତ କରିଥିଲା । ସେଥିପାଇଁ ସେଠାରେ ସେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିଥିଲେ । ଏ ଦେଶର ଲୋକ ମଧ୍ୟ ଇଂରେଜ ଶାସନରେ ପେଷି ହୋଇଯାଉଥିଲେ । ସେମାନଙ୍କର ଅବସ୍ଥା ସୁଧାରିବା ପାଇଁ ସତ୍ୟାଗ୍ରହ ଅସ୍ତ୍ର ବ୍ୟବହାର କରିବାକୁ ପଡ଼ିବ ବୋଲି ବୁଝିପାରି ଗାନ୍ଧିଜୀ ଅହମଦାବାଦଠାରେ ସତ୍ୟାଗ୍ରହ ଆଶ୍ରମ ସ୍ଥାପନକଲେ । ପ୍ରଥମେ ସେ ଆଶ୍ରମରେ ପୁରୁଷ ସ୍ତ୍ରୀ ମିଶି ୨୧ ଜଣ

ଥିଲେ । ସେଠାରେ ସମସ୍ତଙ୍କ ପାଇଁ ଗୋଟିଏ ଜାଗାରେ ଖାଇବାର ବ୍ୟବସ୍ଥା ହେଉଥିଲା । ରନ୍ଧାବଢ଼ା ଦେଖିବା ଓ ଖାଇବାକୁ ଦେବା ଭାର କସ୍ତୁରବାଙ୍କ ଉପରେ ଥିଲା । ସେହି ଦିନରୁ ଆଶ୍ରମର ସଭ୍ୟମାନେ ତାଙ୍କୁ ମାଆ ବୋଲି ଡାକୁଥିଲେ ।

ଆଶ୍ରମରେ କେତେ ଜଣ ଅଛୁଆଁ ପିଲାଙ୍କୁ ସ୍ଥାନ ଦେବାରୁ କେତେକ ଲୋକ ଆଶ୍ରମ ଛାଡ଼ି ଚାଲିଗଲେ । କସ୍ତୁରବା ମଧ୍ୟ ଏଥିରେ ଗାନ୍ଧିଜୀଙ୍କ ସହିତ ଏକମତ ହେଲେ ନାହିଁ । ଗାନ୍ଧିଜୀ ମହା ଅଡୁଆରେ ପଡ଼ିଲେ । ଏହାର ପ୍ରତିକାର ପାଇଁ ସେ ସାତ ଦିନ ଅନଶନ କଲେ । ତାହା ଫଳରେ ସର୍ବପ୍ରଥମେ କସ୍ତୁରବାଙ୍କ ମନ ବଦଳିଲା । ସେ ନିଜର ଦୋଷ ମାନି ଗାନ୍ଧିଜୀଙ୍କ ବ୍ରତ ଗ୍ରହଣ କଲେ ଓ ଅସ୍ପୃଶ୍ୟତା ଦୂର କରିବାପାଇଁ ସେହି ସମୟରୁ ଲାଗିପଡ଼ିଲେ । ସତ୍ୟାଗ୍ରହ ଆଶ୍ରମରେ ଅସ୍ପୃଶ୍ୟ ପିଲାମାନେ ସମସ୍ତଙ୍କ ସହିତ ସମାନ ଭାବରେ ରହିଲେ । ଗାନ୍ଧିଜୀ ଓ କସ୍ତୁରବା ଲକ୍ଷ୍ମୀ ନାମରେ ଗୋଟିଏ ଅଛୁଆଁ ପିଲାକୁ ଝିଅ କରି ପାଳିଲେ । ଦେଶସାରା ଚହଳ ପଡ଼ିଗଲା ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଗାନ୍ଧିଜୀ ୬ ବର୍ଷ ପାଇଁ ଜେଲ ଗଲେ । କସ୍ତୁରବା ଆନ୍ଦୋଳନ ଚଳାଇବାରେ ଲାଗି ପଡ଼ିଲେ । ସେ ଦେଶର ଚାରିଆଡ଼େ ବୁଲି ଗାନ୍ଧିଜୀଙ୍କ ବାଣୀ ପ୍ରଚାର କଲେ । ଇଂରେଜ ସରକାର ଦେଶର ବଡ଼ ବଡ଼ ନେତାଙ୍କୁ ବନ୍ଦୀ କରି ଆନ୍ଦୋଳନ ଦବାଇଦେବାକୁ ଚେଷ୍ଟା କଲେ; କିନ୍ତୁ ସେଥିରେ କିଛି ଫଳ ହେଲାନାହିଁ ।

୧୯୩୦ରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଗାନ୍ଧିଜୀ ବନ୍ଦୀ ହେଲେ । ଇଂରେଜ ସରକାର କସ୍ତୁରବାଙ୍କୁ ମଧ୍ୟ ଜେଲ ଦେଲେ ।

୧୯୩୯ରେ ରାଜକୋଟଠାରେ ପ୍ରଜା ଆନ୍ଦୋଳନ ଆରମ୍ଭ ହେଲା । ସ୍ୱାସ୍ଥ୍ୟ ଭଲ ନ ଥିଲେ ମଧ୍ୟ କସ୍ତୁରବା ସେ ଆନ୍ଦୋଳନରେ ଅଗ୍ରଣୀ ହୋଇ ବାହାରିଲେ । ରାଜକୋଟ ରାଜା ତାଙ୍କୁ ବନ୍ଦୀ କଲେ । ଏହି ସମୟରେ ଗାନ୍ଧିଜୀ ଆମରଣ ଅନଶନ ଆରମ୍ଭ କରିଥିଲେ । ତାହା ଫଳରେ ଗୋଟିଏ ମୀମାଂସା ହେଲା । କସ୍ତୁରବା ଓ ଅନ୍ୟାନ୍ୟ ମହିଳାମାନଙ୍କୁ ଜେଲରୁ ଛାଡ଼ିଦିଆଗଲା ।

୧୯୪୨ ରେ ଭାରତର ଶେଷ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହେଲା । ଇଂରେଜ ସରକାର ଗାନ୍ଧିଜୀଙ୍କୁ ବନ୍ଦୀ କଲେ । ସେ ସମୟରେ କସ୍ତୁରବା ଦିଲ୍ଲୀରେ ଥିଲେ । ସେଠାରେ ମଧ୍ୟ ତାଙ୍କୁ ବନ୍ଦୀ କରାଗଲା । ଗାନ୍ଧିଜୀ ଓ କସ୍ତୁରବାଙ୍କୁ ଆଗା ଖାଁଙ୍କ ଭବନରେ ରଖାଗଲା । ସେ ସମୟରେ ତାଙ୍କର ସ୍ୱାସ୍ଥ୍ୟ ଅତି ଖରାପ ହେଲା । ଡାକ୍ତରମାନେ ତାଙ୍କ ଜୀବନର ଆଶା ଛାଡ଼ିଦେଲେ; କିନ୍ତୁ ଇଂରେଜ ସରକାର ତାଙ୍କ ସହିତ କାହାରିକୁ ସାକ୍ଷାତ କରିବାକୁ ଛାଡ଼ିଲେ ନାହିଁ । ତାଙ୍କୁ ଜେଲରୁ ଛାଡ଼ିଦେବା ପାଇଁ ଦେଶ ସାରା ଆନ୍ଦୋଳନ ହେଲା । ସେଥିରେ ମଧ୍ୟ ବ୍ରିଟିଶ ସରକାରଙ୍କ ମନ ବଦଳିଲା ନାହିଁ । ଶେଷରେ ୧୯୪୪ ସାଲ ଫେବୃୟାରୀ ମାସ ୨୨ ତାରିଖ ଦିନ ଜେଲ ଭିତରେ ସେ ସ୍ୱର୍ଗାରୋହଣ କଲେ ।

କସ୍ତୁରବା ଦେଶର ସ୍ୱାଧୀନତା ପାଇଁ ନିଜକୁ ମଧ୍ୟ ବଳୀ ଦେଲେ । ଦେଶ ଆଗରେ କାଳକାଳକୁ ଜଣେ ମହିମାମୟୀ ନାରୀର ଆଦର୍ଶ ରହିଗଲା ।

---

## ସର୍ଦ୍ଦାର ବଲ୍ଲଭଭାଇ ପଟେଲ

୧୮୭୫ ଖ୍ରୀଷ୍ଟାବ୍ଦରେ ବମ୍ବେ ପ୍ରଦେଶର ଖଇରା ଜିଲାରେ ସର୍ଦ୍ଦାର ପଟେଲ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଜାଭେରଭାଇ ପଟେଲ । ସେ ବଡ଼ ଲୋକ ନଥିଲେ । ସାଧାରଣ ଗୃହସ୍ଥ ପରି ସେ ଚଳୁଥିଲେ । ତାଙ୍କର ଜଣେ ପୂର୍ବପୁରୁଷ ଭାରତର ପ୍ରଥମ ସ୍ୱାଧୀନତା ଯୁଦ୍ଧରେ ଯୋଗଦେଇ ପ୍ରାଣ ହରାଇଥିଲେ ।



ପିଲାଦିନେ ବଲ୍ଲଭଭାଇ ବଡ଼ ଲୋକେ ଘରର ସୁବିଧା ପାଇ ନ ଥିଲେ । ଗାଁର ସବୁ ପିଲାଙ୍କ ସହିତ ମିଳାମିଶି ସେ ବଢ଼ିଥିଲେ । ସେତେବେଳେ ସେ ବଡ଼ ଦୁଷ୍ଟ ଥିଲେ । ବଡ଼ ହେବା ପରେ ମଧ୍ୟ ଅନ୍ୟାୟ ସହ୍ୟ କରିବାପାଇଁ ସେ ପ୍ରସ୍ତୁତ ନ ଥିଲେ ।

ପିଲାଦିନେ ବଲ୍ଲଭଭାଇ ଭଲ ପଢ଼ୁ ନ ଥିଲେ । ବିଶେଷତଃ ସଂସ୍କୃତ ଭାଷା ଶିଖିବାକୁ ସେ ଆଦୌ ସୁଖ ପାଉ ନଥିଲେ । ଏଥିପାଇଁ ତାଙ୍କୁ ଅନେକ ଦଣ୍ଡ ଭୋଗିବାକୁ ପଡ଼ିଲା; କିନ୍ତୁ ସେଥିରେ

ମଧ୍ୟ ତାଙ୍କର ମନ ବଦଳିଲା ନାହିଁ । ଅତି କଷ୍ଟରେ ସେ ମାଟ୍ରିକ୍ୟୁଲେଶନ ପାସ୍ କଲେ ।

ସେ ସମୟରେ ମାଟ୍ରିକ୍ୟୁଲେଶନ ପରେ ଆଇନ ପଢ଼ା-ହେଉଥିଲା । ବଲ୍ଲଭଭାଇ ଆଇନ ପଢ଼ି ସେଥିରେ ପାଶ କରି ଓକିଲ ହେଲେ । ପ୍ରଥମେ ଗୋଧ୍ରା ନାମକ ସ୍ଥାନରେ ସେ ଓକିଲାତି ଆରମ୍ଭ କଲେ । ସେଥିରେ ରୋଜଗାର ମଧ୍ୟ ହେଲା; କିନ୍ତୁ ସେ ଅଳ୍ପରେ ସନ୍ତୁଷ୍ଟ ହେବା ଲୋକ ନ ଥିଲେ । ଜଣେ ବଡ଼ ବାରିଷ୍ଟର ହେବା ତାଙ୍କର ଲକ୍ଷ୍ୟ ଥିଲା । ଘରୁ ଟଙ୍କା ଖର୍ଚ୍ଚ କରି ବିଦେଶକୁ ଯାଇ ବାରିଷ୍ଟରୀ ପଢ଼ିବାପାଇଁ ତାଙ୍କର ସମ୍ବଳ ନ ଥିଲା । ସେ ନିଜ ଆୟରୁ କିଛି କିଛି ବଳାଇ ରଖିଲେ । ଯଥେଷ୍ଟ ଧନ ହାତରେ ହେବା ପରେ ବାରିଷ୍ଟରୀ ପଢ଼ିବାପାଇଁ ସେ ବିଲାତ ଗଲେ ।

ସେତେବେଳେ ବାରିଷ୍ଟରୀ ପଢ଼ିବାରେ ଅନେକ ଟଙ୍କା ଖର୍ଚ୍ଚ ହେଉଥିଲା । ବହିପତ୍ର କିଣିବା ପାଇଁ ମଧ୍ୟ ବହୁତ ଟଙ୍କା ଲାଗୁଥିଲା । ଏତେ ସମ୍ବଳ ପଟେଲଙ୍କ ନିକଟରେ ନ ଥିଲା । ସେ ବିଲାତରେ ଏକାନ୍ତ ମନୋଯୋଗ କରି ଅତି କଷ୍ଟ ସହି ପାଠ ପଢ଼ିଲେ । ନିଜ ପାଖରେ ବହି ନ ଥିବାରୁ ଏଗାର ମାଇଲ ଦୂରରେ ଥିବା କଲେଜ ପୁସ୍ତକାଗାରକୁ ଯାଇ ସେଠାରେ ବଡ଼ ବଡ଼ ଆଇନ ଶାସ୍ତ୍ର ଅଧ୍ୟୟନ କରୁଥିଲେ । ପଟେଲଙ୍କ ପରିଶ୍ରମ ବୃଥା ହେଲା ନାହିଁ । ସେ ବାରିଷ୍ଟରୀ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ । ଭାରତର ଜଣେ ଯୁବକ ବିଦେଶରେ ଦକ୍ଷତା ଦେଖାଇ-ଥିବାରୁ ଏ ଦେଶର ଲୋକେ ଗୌରବ ଅନୁଭବ କଲେ ।

ଭାରତକୁ ଫେରିଆସି ସେ ଅହମଦାବାଦଠାରେ ବାରିଷ୍ଟରୀ ଆରମ୍ଭ କଲେ । ଅତି ଅଳ୍ପ ସମୟ ମଧ୍ୟରେ ବଡ଼ ବାରିଷ୍ଟର ବୋଲି

ତାଙ୍କର ନାମ ଗୁରୁଆଡ଼େ ଶୁଣାଗଲା । ଫଉଜଦାରୀ ମକଦ୍ଦମାରେ ତାଙ୍କର ବିଶେଷ ଦକ୍ଷତା ଥିଲା । ସେ ଅତି ଧୈର୍ଯ୍ୟ ସହକାରେ ମକଦ୍ଦମା ଚଳାଉଥିଲେ । ଥରେ କଚେରୀରେ ଗୋଟିଏ ମକଦ୍ଦମା ବିଚାର ହେଉଥିଲା । ସେହି ସମୟରେ ତାର ଯୋଗେ ସେ ତାଙ୍କର ସ୍ତ୍ରୀଙ୍କର ମୃତ୍ୟୁ ସମ୍ବାଦ ପାଇଲେ । ଅନ୍ୟ କୌଣସି ଓକିଲ ହୋଇଥିଲେ ସେହିଠାରେ ମକଦ୍ଦମା ବନ୍ଦ କରି କଚେରୀ ଛାଡ଼ି ଚାଲି-ଯାଇଥାନ୍ତେ; କିନ୍ତୁ କର୍ତ୍ତବ୍ୟ ଆଗରେ ନିଜର ଭଲ ମନ୍ଦ ବିଚାର କରିବା ଅଭ୍ୟାସ ତାଙ୍କର ନଥିଲା । ତାର ଖବରଟି ନିଜ ପାଖରେ ରଖିଦେଇ ସେ ତାଙ୍କ କାମରେ ଲାଗିଲେ । କଚେରୀପରେ ସମସ୍ତଙ୍କୁ ମୃତ୍ୟୁ ସମ୍ବାଦ ଜଣାଇଲେ ।

ବାରିଷ୍ଟରୀ ବ୍ୟବସାୟ ଆରମ୍ଭ କରିବାର କିଛି ଦିନ ପର୍ଯ୍ୟନ୍ତ ଦେଶର କଥା ପ୍ରତ୍ୟକ୍ଷ ଭାବରେ ତାଙ୍କ ମନରେ ସ୍ଥାନ ପାଇ ନ ଥିଲା । ଗୁଜୁରାଟ ଦୁର୍ଭିକ୍ଷ ତାଙ୍କ ଜୀବନରେ ଗୋଟାଏ ନୂଆ ଅଧ୍ୟାୟ ଆରମ୍ଭ କଲା । ୧୯୨୧ ରେ ସେ ଅଞ୍ଚଳରେ ଘୋର ଦୁର୍ଭିକ୍ଷ ପଡ଼ିଲା । ଲୋକେ ପୋକ ମାଛି ପରି ମଲେ; କିନ୍ତୁ ସରକାର ଖଜଣା ଛାଡ଼ି କଲେ ନାହିଁ । ଗରିବ କୃଷକମାନେ ଇଂରେଜ କର୍ତ୍ତୃପକ୍ଷଙ୍କଠାରେ ବାରମ୍ବାର ଆବେଦନ ନିବେଦନ କଲେ ମଧ୍ୟ କିଛି ଫଳ ହେଲାନାହିଁ । ସେତେବେଳେ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ଫେରିଥିଲେ । ଇଂରେଜ ସରକାରଙ୍କର ଏ ଅନ୍ୟାୟ ଆଚରଣ ଗାନ୍ଧିଜୀଙ୍କୁ ବଡ଼ ବାଧିଲା । ଅବସ୍ଥାର ପ୍ରତିକାର ପାଇଁ ସେ ସତ୍ୟାଗ୍ରହ ଅସ୍ତ୍ର ବ୍ୟବହାର କରିବାକୁ ସ୍ଥିର କଲେ । ଏ କାମରେ ସର୍ଦ୍ଦାର ପଟେଲ ତାଙ୍କର ଡାହାଣ ହାତ ହୋଇ ବାହାରିଲେ ।

ଏଥି ପୂର୍ବରୁ ଗାନ୍ଧିଜୀଙ୍କ ବିଷୟ ତାଙ୍କ କାନରେ ବାଜିଥିଲା; କିନ୍ତୁ ତାହା ତାଙ୍କ ମନରେ ସ୍ଥାନ ପାଇ ନ ଥିଲା । ସେ ମଧ୍ୟ

ଗାନ୍ଧିଜୀଙ୍କ ସହିତ ଦେଖାସାକ୍ଷାତ କରିବାର ସୁଯୋଗ ପାଇ ନଥିଲେ । ପରିଚୟ ହେବାପରେ ସେ ମହାତ୍ମାଙ୍କ ଆଡ଼କୁ ଟାଣି ହୋଇଗଲେ ଓ ପରେ ବାରିଷ୍ଟରୀ ଛାଡ଼ି ଗାନ୍ଧିଙ୍କର ପନ୍ଥା ଅନୁସରଣ କଲେ । ଦେଶ ପାଇଁ ସେ ନିଜକୁ ଉତ୍ସର୍ଗ କଲେ । ଅର୍ଥ ଉପାର୍ଜ୍ଜନ କରିବାର ଆକାଂକ୍ଷା ପଛରେ ପଡ଼ିରହିଲା ।

ଗୁଜୁରାଟରେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ ହେଲା । ଗାନ୍ଧିଜୀ ଓ ସର୍ଦ୍ଦାର ପଟେଲ ଗାଁ ଗାଁ ବୁଲି ଅନ୍ୟାୟ ଖଜଣା ନ ଦେବା ପାଇଁ କୃଷକମାନଙ୍କୁ କହିଲେ । ଯେତେ ଅତ୍ୟାଚାର ହେଲେ ମଧ୍ୟ ସେମାନେ ନିଜର ପ୍ରତିଜ୍ଞା ଛାଡ଼ନ୍ତୁ ନାହିଁ ବୋଲି ବୁଝାଇଥିଲେ । କ୍ରମେ କ୍ରମେ ଲୋକଙ୍କ ଭିତରେ ଏକତା ଆସିଲା । ସେମାନେ ଇଂରେଜ ସରକାର ବିରୁଦ୍ଧରେ ଠିଆହେବା ପାଇଁ ଦୃଢ଼ପ୍ରତିଜ୍ଞ ହେଲେ । ଶେଷରେ ସରକାର ଲୋକଶକ୍ତି ନିକଟରେ ମୁଣ୍ଡ ନୁଆଇଁବାକୁ ବାଧ୍ୟ ହେଲେ । କୃଷକମାନଙ୍କୁ ଖଜଣା ଛାଡ଼ି ଦିଆଗଲା ।

ଏହି ସମୟରେ ଲୋକେ ସର୍ଦ୍ଦାର ପଟେଲଙ୍କ ସଂଗଠନ-ଶକ୍ତିର ପରିଚୟ ପାଇଲେ । ତେଣୁ ୧୯୨୨ ରେ ଅହମ୍ମଦାବାଦ ଠାରେ ଯେତେବେଳେ କଂଗ୍ରେସ ଅଧିବେଶନ ବସିବାର ସ୍ଥିର ହେଲା, ବଲ୍ଲଭଭାଇ ଅଭ୍ୟର୍ଥନା କମିଟିର ସଭାପତି ନିର୍ବାଚିତ ହେଲେ ।

ସେତେବେଳକୁ ଗାନ୍ଧିଜୀ ଖଦିଲୁଗାର ପ୍ରଚାର ଆରମ୍ଭ କରି-ଥିଲେ । ଅହମ୍ମଦାବାଦରେ କଂଗ୍ରେସ କମିଟିର ପ୍ରତିନିଧିମାନଙ୍କର ତମ୍ବୁଗୁଡ଼ିକ ପୂରାପୂରି ଖଦିରେ ହେଲା । ଭାରତୀୟ ମତରେ ମଧ୍ୟ ଲୋକମାନଙ୍କର ଖାଇବା ପିଇବା ବ୍ୟବସ୍ଥା ହେଲା । ଦେଶର

ସ୍ୱାଧୀନତା ଲାଭପାଇଁ ବ୍ୟାପକ ଭାବରେ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇବାର କଥା ଏ ଅଧିବେଶନରେ ସ୍ଥିର ହୋଇଥିଲା । ଏ ଲଢ଼େଇ ପାଇଁ ଜଣେ ଟାଣୁଆ ଲୋକ ଦରକାର । ପଟେଲ ଉପଯୁକ୍ତ ବିବେଚିତ ହେବାରୁ ତାଙ୍କ ଉପରେ ଏହି ଗୁରୁଦାୟିତ୍ୱ ଦିଆଗଲା ।

ବର୍ଦ୍ଦୋଲିଠାରେ ପ୍ରଥମେ ସତ୍ୟାଗ୍ରହ ଆରମ୍ଭ ହେବାର ସ୍ଥିର ହେଲା । ଏଥିପାଇଁ ପୂର୍ଣ୍ଣବେଗରେ ଆୟୋଜନ ଚାଲିଥିଲାବେଳେ ଚୌରିଚୌରାଠାରେ ଲୋକେ କେତେକ ପୁଲିସଙ୍କୁ ଥାନା ଭିତରେ ପୂରାଇ ଘରେ ନିଆଁ ଲଗାଇ ମାରିଦେଲେ । ଏହି ହିଂସାକାଣ୍ଡ ଯୋଗୁଁ ଗାନ୍ଧିଜୀ ସତ୍ୟାଗ୍ରହ ବନ୍ଦ କରିଦେଲେ ଓ ସୂତାକଟା, ହିନ୍ଦୁ-ମୁସଲମାନ ଏକତା ସ୍ଥାପନ, ଅସ୍ପୃଶ୍ୟତା ନିବାରଣ ଆଦି ଗଠନ-ମୂଳକ କାମପାଇଁ ନିର୍ଦ୍ଦେଶ ଦେଲେ । ଆନ୍ଦୋଳନ ଦବିଯିବାର ସୁବିଧାପାଇଁ ଇଂରେଜ ସରକାର ଗାନ୍ଧିଜୀଙ୍କୁ ୬ ବର୍ଷ ଜେଲ ଦଣ୍ଡ ଦେଲେ ।

ଗାନ୍ଧିଜୀଙ୍କ ଅନୁପସ୍ଥିତିରେ କଂଗ୍ରେସ ଭିତରେ ମତଭେଦ ଘଟିଲା । କଂଗ୍ରେସ ଯେଉଁ ନୀତି ଧରି ଚାଲୁଥିଲା, ତାହା ବଦଳାଇବା ପାଇଁ କେତେକ ନେତା ଲାଗି ପଡ଼ିଲେ । ସେମାନେ ଧରି ବସିଲେ ଯେ, କଂଗ୍ରେସ୍ ଲୋକେ ବ୍ୟବସ୍ଥା ସଭା ଭିତରେ ପଶି ସେଠାରେ ବ୍ରିଟିଶ ସରକାର ସହିତ ଲଢ଼ାଇ କରନ୍ତୁ । ଆଉ ଦଳେ ସ୍ଥିର କଲେ ଯେ, କଂଗ୍ରେସ ଯେଉଁ ନୀତିରେ ଚାଲୁଛି, ସେଥିରେ କିଛି ଅଦଳବଦଳ କଲେ ତାହା ଦେଶପାଇଁ ଭଲ ହେବ ନାହିଁ । ପ୍ରଥମେ ଦଳର ନେତା ଥିଲେ ପଣ୍ଡିତ ମୋତିଲାଲ ନେହେରୁ ଓ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ । ଦ୍ୱିତୀୟ ଦଳର ନେତା ସର୍ଦ୍ଦାର ପଟେଲ ଓ

ଶ୍ରୀ ରାଜଗୋପାଳାଚାରୀ । ଏ ଦୁଇଦଳ ମଧ୍ୟରେ ଅନେକ ବାଦାନୁବାଦ ଚାଲିଲା । ଶେଷରେ ଯେଉଁମାନେ କଂଗ୍ରେସକୁ ନୂଆ ବାଟରେ ଚଳାଇବା ପାଇଁ ଇଚ୍ଛା କରୁଥିଲେ, ସେମାନେ ଜିଣିଲେ ଓ କଂଗ୍ରେସର ଲୋକେ ବ୍ୟବସ୍ଥାପକକୁ ଯିବା ସ୍ଥିରହେଲା ।

ଏହି ସମୟରେ ଗୁଜୁରାଟରେ ଭୀଷଣ ବର୍ଷା ହେଲା । ନଈ ବଢ଼ିରେ ଲୋକମାନଙ୍କର ଦରଦ୍ୱାର ଭାସିଗଲା । ସର୍ଦ୍ଦାର ପଟେଲ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ସ୍ୱେଚ୍ଛାସେବକ ଦଳ ଗଢ଼ି ଗାଁ ଗହଳକୁ ପଠାଇଲେ । ତାଙ୍କର ସେବାକାର୍ଯ୍ୟ ଦେଖି ଲୋକେ ତାଙ୍କୁ ଧନ୍ୟ ଧନ୍ୟ କଲେ ।

ଏହାପରେ ବର୍ଦ୍ଦୋଲିରେ ସତ୍ୟାଗ୍ରହ ଆରମ୍ଭ ହେଲା । ସରକାର ଖଜଣା ବହୁତ ବଢ଼ାଇ ଦେବାରୁ ଲୋକେ ତାହା ଦେବେ ନାହିଁ ବୋଲି ସ୍ଥିର କଲେ । ସର୍ଦ୍ଦାର ପଟେଲ ଲୋକଙ୍କୁ ଏପରି ଭାବରେ ସଂଗଠିତ କରିଥିଲେ ଯେ, ଅଜଣାରେ କୌଣସି ସରକାରୀ କର୍ମଚାରୀ ସେ ଅଞ୍ଚଳକୁ ପଶିବା କଷ୍ଟକର ହୋଇଥିଲା । ଆନ୍ଦୋଳନ ଯେତିକି ବଢ଼ିଲା, ତାକୁ ଦବାଇବାପାଇଁ ସରକାର ସେତିକି ଚେଷ୍ଟାକଲେ । ଇଂରେଜ ଶାସକମାନେ ହଜାର ହଜାର ଲୋକ ଓ ଗୋରୁଗାଈଙ୍କୁ ଧରିନେଇ ଗୋଟାଏ ଗୋଟାଏ ଜାଗାରେ ଜମାକରି ରଖିଲେ । ନାନା ଅସୁବିଧାରେ ପଡ଼ି ସେମାନଙ୍କ ଭିତରୁ କେତେକ ମୃତ୍ୟୁ ମୁଖରେ ପଡ଼ିଲେ, ତଥାପି ଲୋକଙ୍କ ପ୍ରତିଜ୍ଞା ଟଳିଲାନାହିଁ । ଏହା ଫଳରେ ଶାସକମାନେ ନଇଁପଡ଼ିବାକୁ ବାଧ୍ୟହେଲେ । ମିଳାମିଶା କରିବା ପାଇଁ ସେମାନେ ସର୍ଦ୍ଦାର ପଟେଲଙ୍କୁ କହିଲେ; କିନ୍ତୁ ସେ ସେଥିରେ ରାଜିହେଲେ ନାହିଁ । ବ୍ରିଟିଶ କର୍ମଚାରୀମାନେ ଅନ୍ୟ ଉପାୟ ନ ଦେଖି ଗାନ୍ଧୀଜୀଙ୍କ

ହାତରେ ପହଞ୍ଚିଲେ, ତେଣୁ ଗାନ୍ଧିଜୀ ନିଜେ ମିଳାମିଶାର ଭାର ନେଲେ । ଏଥିରେ ଉଭୟ ପକ୍ଷ ରାଜି ହେବାରୁ ଆନ୍ଦୋଳନ ବନ୍ଦ ହେଲା ।

୧୯୩୦ରେ ଗାନ୍ଧିଜୀ ଲବଣ-ସତ୍ୟାଗ୍ରହ ଆରମ୍ଭ କଲେ । ଗୁଜୁରାଟରେ ସତ୍ୟାଗ୍ରହ ଚଳାଇବା ଭାର ସର୍ଦ୍ଦାର ପଟେଲଙ୍କ ଉପରେ ରହିଲା । ଇଂରେଜ ସରକାର ତାଙ୍କର ସଂଗଠନଶକ୍ତିକୁ ଡରୁଥିଲେ । ସେମାନେ ପଟେଲଙ୍କୁ ବନ୍ଦୀ କଲେ । ଏହା ଫଳରେ ଗୁଜରାଟରେ ଆନ୍ଦୋଳନ ପ୍ରବଳ ହୋଇ ଉଠିଲା । ହଜାର ହଜାର କୃଷକ ଜେଲରେ ପଶିଗଲେ । ବହୁଆଡ଼େ ଲାଠିମାଡ଼ ଚାଲିଲା, ତଥାପି କିଛି ହେଲା ନାହିଁ । ଗୁଜୁରାଟର ଲୋକେ ପ୍ରତିଜ୍ଞା କଲେ ଯେ, ସ୍ୱାଧୀନତା ଲାଭ ନ ହେବା ପର୍ଯ୍ୟନ୍ତ ସେମାନେ ନିଜେ ନିଶ୍ଚିନ୍ତ ହେବେ ନାହିଁ କି ସରକାରଙ୍କୁ ନିଶ୍ଚିନ୍ତ କରାଇଦେବେ ନାହିଁ ।

ପଟେଲଙ୍କୁ ମୁକ୍ତ କରିଦେଲେ ଆନ୍ଦୋଳନ ଦବିଯିବ ବୋଲି ବିଚାରି ସରକାର ତାଙ୍କୁ ଛାଡ଼ିଦେଲେ । କିନ୍ତୁ ସେଥିରେ ମଧ୍ୟ କିଛି ଫଳ ହେଲା ନାହିଁ । ଏହା ଦେଖି ସରକାର ପୁଣି ତାଙ୍କୁ ଗିରଫ କରିନେଲେ । ତାଙ୍କ ସହିତ ତାଙ୍କର କନ୍ୟା ମଣିବେନ୍ ମଧ୍ୟ ବନ୍ଦୀ ହେଲେ । ତାଙ୍କର ୮୦ ବର୍ଷର ବୁଢ଼ୀ ମା ଘରେ କାନ୍ଦୁଥିବାବେଳେ ପୁଲିସ ଘରେ ପଶି ବୁଢ଼ୀଙ୍କୁ ଗଡ଼େଇଦେଇ ଭାତହାଣ୍ଡି ଭାଙ୍ଗି-ଦେଲେ । ଏ ସବୁ ଅତ୍ୟାଚାର ଫଳରେ ଦେଶରେ ସତ୍ୟାଗ୍ରହ ଆନ୍ଦୋଳନର ଶକ୍ତି ଏପରି ବଢ଼ିଲା ଯେ, ଇଂରେଜ ସରକାର ବାଧ୍ୟ ହୋଇ ଗାନ୍ଧିଜୀଙ୍କ ସହିତ ଚୁକ୍ତି କଲେ । ଚୁକ୍ତି ଫଳରେ ସତ୍ୟାଗ୍ରହ ଆନ୍ଦୋଳନ ବନ୍ଦ ହେଲା, ସତ୍ୟାଗ୍ରହୀମାନେ ମୁକ୍ତ ପାଇଲେ ।

ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଗାନ୍ଧିଜୀ ଯୋଗ ଦେଇ ଇଂରେଜମାନଙ୍କର ଭିତର ଉଦ୍ଦେଶ୍ୟକୁ ପଦାରେ ପକାଇଲେ । ଏ ସଭାରେ କିଛି ଫଳ ନ ହେବାରୁ ସେ ଭାରତକୁ ଫେରି ଆସିଲେ । ପୁଣିଥରେ ପୁଣି ସତ୍ୟାଗ୍ରହ ଆନ୍ଦୋଳନ ଲାଗିଗଲା । ମହାତ୍ମାଗାନ୍ଧି, ପଣ୍ଡିତ ଜବାହରଲାଲ, ସର୍ଦ୍ଦାର ପଟେଲ ଆଦି ନେତାମାନେ ବନ୍ଦୀ ହେଲେ । ଅଢ଼େଇ ବର୍ଷ ଜେଲରେ ରହିବା ପରେ ତାଙ୍କ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ତା' ଫଳରେ ସରକାର ତାଙ୍କୁ ମୁକ୍ତ ଦେଲେ ।

୧୯୩୫ରେ ଭାରତପାଇଁ ଇଂରେଜ ସରକାର ଗୋଟିଏ ନୂଆ ଶାସନ ଆଇନ ଗଢ଼ିଲେ । ଏଥିରେ ବେଶି ସଂଖ୍ୟାରେ ନିର୍ବାଚିତ ଲୋକପ୍ରତିନିଧି ରହିବେ ବୋଲି ସ୍ଥିର ହୋଇଥିଲା । ନିର୍ବାଚନରେ ଲଢ଼ିବା ପାଇଁ କଂଗ୍ରେସ ସ୍ଥିର କଲା । ସେ ସମୟରେ ଭାରତରେ ୧୧ଟି ପ୍ରଦେଶ ଥିଲା । ତାହା ମଧ୍ୟରେ ୮ଟି ପ୍ରଦେଶରେ ବେଶି ସଂଖ୍ୟାରେ କଂଗ୍ରେସ ଲୋକ ନିର୍ବାଚିତ ହେଲେ । ସେ ସବୁ ପ୍ରଦେଶରେ କଂଗ୍ରେସ ପକ୍ଷରୁ ମନ୍ତ୍ରିମଣ୍ଡଳ ଗଠିତ ହେଲା ।

୧୯୩୮ ସାଲରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା । ଏ ଯୁଦ୍ଧ କାହିଁକି ହେଉଛି, ସେ ବିଷୟ ବ୍ରିଟିଶ ସରକାର ସ୍ପଷ୍ଟଭାବରେ ଘୋଷଣା ନ କରିବାରୁ ପ୍ରତିବାଦ କରି ଆଠଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରି-ମଣ୍ଡଳ ଶାସନ କାମ ଛାଡ଼ିଦେଲେ ।

୧୯୪୨ ମସିହା ଅଗଷ୍ଟ ମାସ ୮ ତାରିଖ ଦିନ କଂଗ୍ରେସରେ ଭାରତ-ଛାଡ଼ ପ୍ରସ୍ତାବ ଗୃହୀତ ହେଲା । ୯ ତାରିଖ ଦିନ ସକାଳୁ ମହାତ୍ମା ଗାନ୍ଧି, ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ ଆଦି ନେତା-ମାନଙ୍କୁ ସରକାର ବନ୍ଦୀ କଲେ । ତା ଫଳରେ ଦେଶର ଚାରି-ଆଡ଼େ ଆନ୍ଦୋଳନ ତେଜି ଉଠିଲା । ଏହାକୁ ଦବାଇବା ପାଇଁ

ସରକାର ଯେତେ ଦମନ ଲୀଳା ଚଳାଇଲେ ମଧ୍ୟ କିଛି ଫଳ ହେଲା ନାହିଁ । ସେମାନେ ଦେଖିଲେ, ଭାରତ ଛାଡ଼ିବା ଛଡ଼ା ତାଙ୍କର ଆଉ ଉପାୟ ନାହିଁ । ମିଳାମିଶା ପାଇଁ ସେମାନେ ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସ ଓ ତାଙ୍କ ପରେ ବ୍ରିଟିଶ ମନ୍ତ୍ରିପରିଷଦ ଦଳକୁ ଭାରତକୁ ପଠାଇଥିଲେ । ତାହା ଫଳରେ ୧୯୪୫ ଜୁନ ମାସ ୧୫ ତାରିଖ ଦିନ କଂଗ୍ରେସ କାର୍ଯ୍ୟକାରୀ କମିଟିର କର୍ମୀମାନଙ୍କ ସହିତ ସର୍ଦ୍ଦାର ପଟେଲ ଜେଲରୁ ମୁକ୍ତ ପାଇଲେ ।

୧୯୪୭ ଅଗଷ୍ଟମାସ ୧୫ ତାରିଖ ଦିନ ମହାତ୍ମା ଗାନ୍ଧି ଓ ସର୍ଦ୍ଦାର ପଟେଲ ଆଦି ନେତାମାନଙ୍କର ଅଦମ୍ୟ ତ୍ୟାଗ, ଚେଷ୍ଟା, ଦେଶବାସୀଙ୍କର ସହଯୋଗ ଓ ଏକାଗ୍ରତା ଫଳରେ ଭାରତ ସ୍ୱାଧୀନ ହେଲା । ଜବାହରଲାଲ ଭାରତର ପ୍ରଧାନମନ୍ତ୍ରୀ ଓ ସର୍ଦ୍ଦାର ପଟେଲ ଭାରତର ସହକାରୀ ପ୍ରଧାନମନ୍ତ୍ରୀ ରୂପେ ନିଯୁକ୍ତ ହେଲେ । ଦେଶର ଶାନ୍ତି ଶୃଙ୍ଖଳା ବିଭାଗର ଦାୟିତ୍ୱରେ ଥାଇ ସେ ଏପରି କାମ କରିଥିଲେ, ଯାହା ପୃଥିବୀ ଇତିହାସରେ ମଧ୍ୟ ବିରଳ । ଦେଶ ଦୁଇ ଭାଗ ହୋଇଗଲା । ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଗୁରୁଆଡ଼େ ଗଣ୍ଡଗୋଳ ଲାଗିଗଲା, ଏହି ସମୟରେ ରାଜାମାନେ ମଧ୍ୟ ମାତି ଉଠିଲେ । ସର୍ବୋପରି ମହାତ୍ମାଗାନ୍ଧି ସ୍ୱର୍ଗାରୋହଣ କଲେ । ଏ ସବୁ ଅବସ୍ଥା ସର୍ଦ୍ଦାର ପଟେଲ ଅମ୍ଳାନ ବଦନରେ ସମ୍ଭାଳି ଯାଇଥିଲେ । ଦେଶପାଇଁ କାର୍ଯ୍ୟ କରୁ କରୁ ସେ ୧୯୫୦ ମସିହା ଡିସେମ୍ବର ମାସ ୧୪ ତାରିଖରେ ମାନବଲୀଳା ସମ୍ବରଣ କଲେ ।

ସର୍ଦ୍ଦାର ପଟେଲ ଓଡ଼ିଶାକୁ ଆସିଥିଲେ । ୧୯୩୮ ମସିହାରେ ପ୍ରଥମଥର ପୁରୀଜିଲାର ଡେଲାଙ୍ଗଠାରେ ଅନୁଷ୍ଠିତ ହେଉଥିବା ଗାନ୍ଧି-ସେବାସଙ୍ଘର ବୈଠକରେ ସେ ଯୋଗ ଦେଇଥିଲେ । ଦ୍ୱିତୀୟଥର

୧୯୪୭ ଡିସେମ୍ବର ମାସ ୧୦ ତାରିଖ ଦିନ ସେ  କଟକରେ ପହଞ୍ଚି ଓଡ଼ିଶାର ୨୬ଗଡ଼ଜାତର ରାଜାଙ୍କୁ ଡକାଇ ଲାଟଭବନରେ ଗୋଟିଏ ସଭା କଲେ । ତାଙ୍କ ନିର୍ଦ୍ଦେଶ ମାନି ଗଡ଼ଜାତର ରାଜାମାନେ ଚୁକ୍ତି-ପତ୍ରରେ ସ୍ୱାକ୍ଷର କରି ନିଜ ନିଜ ରାଜ୍ୟକୁ ଓଡ଼ିଶା ସହିତ ମିଶାଇ ଦେଲେ । କେବଳ ମୟୂରଭଞ୍ଜ ପଛକୁ ରହିଯାଇଥିଲା । ତାହା ମଧ୍ୟ ୧୯୪୯ରେ ଯୋଗଦେବାକୁ ବାଧ୍ୟ ହେଲା ।

ସର୍ଦ୍ଦାର ପଟେଲ କ୍ରମେ କ୍ରମେ ଭାରତର ଗୃରିଆଡ଼େ ବୁଲି ସବୁ ଗଡ଼ଜାତକୁ ଭାରତ ସହିତ ମିଶାଇଦେଲେ । ପ୍ରାୟ ୪ ମାସ ଭିତରେ ୬୦୦ ଗଡ଼ଜାତ ମିଶିଗଲା । ଏତେ ଅଳ୍ପ ସମୟ ଭିତରେ ବିନା ରକ୍ତପାତରେ ଏଡ଼େ ବଡ଼ କାମ ହୋଇଥିବାର ଉଦାହରଣ ଇତିହାସରେ ନାହିଁ । ଏ କାର୍ଯ୍ୟ ଫଳରେ ସେତେବେଳେ ବିଶାଳ ଉତ୍କଳ ଗଠନ ସମ୍ଭବ ହୋଇଥିଲା । ଭାରତରେ ମଧ୍ୟ ଏକତା ପ୍ରତିଷ୍ଠିତ ହେଲା ।

———

## ଶ୍ରୀମତୀ ସରୋଜିନୀ ନାଇଡୁ

ଆମ ଭାରତବର୍ଷ ଅତି ପ୍ରାଚୀନ ଦେଶ । ଏ ଦେଶର ସଭ୍ୟତା ପୃଥିବୀର ଅନ୍ୟାନ୍ୟ ସଭ୍ୟତାଠାରୁ ସ୍ୱତନ୍ତ୍ର । ଏ ଦେଶର ଲୋକେ ଯେପରି ଜୀବନଯାତ୍ରା ନିର୍ବାହ କରନ୍ତି, ପୃଥିବୀର ଅନ୍ୟ କୌଣସି-ଠାରେ ସେପରି କରିବାର ଦେଖାଯାଏ ନାହିଁ ।

ଭାରତୀୟ ନାରୀ କୌଣସି ଦିନ ମୂର୍ଖ ନ ଥିଲେ । ଆଜି ମଧ୍ୟ ଏ ନାରୀମାନଙ୍କ ମଧ୍ୟରେ ଯେଉଁମାନଙ୍କର ଅକ୍ଷର ସହିତ ପରିଚୟ ନାହିଁ, ସେମାନେ ମୂର୍ଖ ନୁହନ୍ତି । ରାମାୟଣ, ମହାଭାରତ କଥା ସେମାନେ ଜାଣନ୍ତି । ବ୍ରତ, ଉପବାସ କରି ସେମାନେ ଯେଉଁ ପୁରାଣ, ଉପାଖ୍ୟାନ ଆଦି ଶୁଣନ୍ତି, ସେଥିର ସାର ମର୍ମ ଆଜି ସଭ୍ୟ ବୋଲାଉଥିବା ପାଶ୍ଚାତ୍ୟ ଦେଶର ନାରୀମାନଙ୍କ ପକ୍ଷରେ ମଧ୍ୟ ସହଜବୋଧ୍ୟ ନୁହେଁ ।

ଏ ଦେଶକୁ ଯେତେବେଳେ ଇଂରେଜମାନେ ପ୍ରଥମେ ଆସିଲେ, ସେତେବେଳେ ଭାରତର ଦଳେ ଲୋକ ବିଲାତି ସଭ୍ୟତାର ଚାକଚକ୍ୟ ଦେଖି ନିଜେ ଇଂରେଜ ହୋଇଯିବେ ବୋଲି ଉଦ୍ୟମ ଚଳାଇଥିଲେ । ଶ୍ରୀମତୀ ସରୋଜିନୀ ନାଇଡୁଙ୍କର ପିତା ଶ୍ରୀ ଅଘୋରନାଥ ଚଟ୍ଟୋପାଧ୍ୟାୟ ସେମାନଙ୍କ ମଧ୍ୟରୁ ଜଣେ । ଅଘୋରନାଥ ବଙ୍ଗଦେଶୀୟ ବ୍ରାହ୍ମଣ । ସେତେବେଳେ ଭାରତରୁ

ଅତି ଅଳ୍ପ ଲୋକ ପାଠ ପଢ଼ିବାପାଇଁ ବିଲାତ ଯାଉଥିଲେ । ଅଘୋରନାଥ ସେମାନଙ୍କ ମଧ୍ୟରେ ଅନ୍ୟତମ । ସେ ସ୍କଟଲଣ୍ଡର ଏଡ଼ିନବରୋ ବିଶ୍ୱବିଦ୍ୟାଳୟରେ ବିଜ୍ଞାନରେ ଡକ୍ଟର ଉପାଧି ପାଇଥିଲେ । ବିଲାତରୁ ଫେରି ସେ ହାଇଦ୍ରାବାଦ ରାଜ୍ୟରେ ଚାକିରି କଲେ । ଆଜି ହାଇଦ୍ରାବାଦରେ ଯେଉଁ ନିଜାମ କଲେଜ ରହିଛି ତାହା ତାଙ୍କରି ଚେଷ୍ଟାରେ ଗଠିତ ହୋଇଥିଲା । ସରୋଜିନୀ ତାଙ୍କର ପ୍ରଥମ ସନ୍ତାନ । ସେ ୧୮୭୮ ସାଲ ଫେବୃୟାରୀ ମାସ ୧୩ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ ।



ସାହେବ ହେବାକୁ ଚେଷ୍ଟା କରି ଅଘୋରନାଥ ନିଜ ଭାଷାକୁ ମଧ୍ୟ ବଦଳାଇଦେଲେ । ସେ ସବୁବେଳେ ଇଂରେଜୀରେ କଥା କହୁଥିଲେ । ସେ ସମୟରେ ହାଇଦ୍ରାବାଦରେ ବଙ୍ଗଦେଶୀୟ ଲୋକ ବେଶି ନଥିଲେ । ସେଠାରେ ବଡ଼ ବଡ଼ ଲୋକ ମଧ୍ୟ ତାଙ୍କ ଘରକୁ ଆସୁଥିଲେ । ସେମାନେ ଉର୍ଦ୍ଦୁ କିମ୍ବା ଅନ୍ୟ ଭାରତୀୟ ଭାଷାରେ କଥାବାର୍ତ୍ତା ନ କରି ଅଘୋରନାଥଙ୍କ ସହିତ ଇଂରେଜୀରେ କଥାବାର୍ତ୍ତା କରୁଥିଲେ । ତାହା ଫଳରେ ପିଲାଦିନୁ ଇଂରେଜୀ ଭାଷା ସରୋଜିନୀଙ୍କର ମାତୃଭାଷା ପରି ହୋଇଥିଲା । ଇଂରେଜୀ ସ୍କୁଲରେ ମଧ୍ୟ ତାଙ୍କର ବିଦ୍ୟାରମ୍ଭ ହୋଇଥିଲା । ସେ ବଡ଼ ବୁଦ୍ଧିମତୀ ଥିଲେ । ୧୨ ବର୍ଷ ବୟସରେ ସେ ଏଣ୍ଟ୍ରାନ୍ସ ପାସ୍ କରିଥିଲେ । କବିତା ଲେଖିବା ପ୍ରତି ପିଲାଦିନୁ ତାଙ୍କର ବେଶି

ଆଗ୍ରହ ଥିଲା । ୧୩ ବର୍ଷ ବୟସରେ ସେ ଗୋଟିଏ ଇଂରାଜୀ କାବ୍ୟ ଲେଖିଥିଲେ । ଏଣ୍ଟ୍ରାନ୍‌ସ ପାସ୍ କରିବା ପରେ ସେ ଗୋଟିଏ ଇଂରେଜୀ ନାଟକ ମଧ୍ୟ ଲେଖିଥିଲେ ।

ପିଲାଦିନୁ ସେ ଇଂରେଜୀ ପଢ଼ିଲେ; ଇଂରେଜ ଢଙ୍ଗରେ ମଧ୍ୟ ବଢ଼ିଲେ, ତେଣୁ ଏଣ୍ଟ୍ରାନ୍‌ସ ପାସ୍ କରିବା ପରେ ଉଚ୍ଚଶିକ୍ଷା ପାଇଁ ସେ ଇଂଲଣ୍ଡକୁ ଯାଇଥିଲେ । ଲଣ୍ଡନରେ ଥିବା କିଙ୍ଗ୍‌ସ କଲେଜରେ ଶିକ୍ଷା ଶେଷକରି ସେ କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ପ୍ରବେଶ କଲେ । ସେଠାରେ ପଢ଼ୁଥିବା ସମୟରେ ସେ ସଭାସମିତିମାନଙ୍କରେ ବକ୍ତୃତା ଦେଉଥିଲେ । ପିଲାଦିନୁ ବିଲାତି ଢଙ୍ଗରେ ବଢ଼ିବାରୁ ଇଂରେଜ-ମାନଙ୍କର ବେଶଭୂଷା, ଖାଦ୍ୟପେୟ ତାଙ୍କୁ ବଡ଼ ଭଲ ଲାଗୁଥିଲା । ସେ ନିଜେ ମଧ୍ୟ ସେହି ଢଙ୍ଗରେ ଚଳୁଥିଲେ । କ୍ୟାମ୍ବ୍ରିଜରେ ପଢୁଥିବା ସମୟରେ ଇଟାଲୀ ଆଦି ଇଉରୋପର ଅନେକ ଦେଶ ବୁଲି ସେ ନାନା ଅଭିଜ୍ଞତା ଅର୍ଜନ କରିଥିଲେ ।

ସରୋଜିନୀଙ୍କୁ ୨୨ ବର୍ଷ ବୟସ ହେବା ସମୟରେ ସେ ଦେଶକୁ ଫେରିଲେ । ହାଇଦ୍ରାବାଦରେ ଡକ୍ଟର ନାଇଡ଼ୁଙ୍କ ସହିତ ତାଙ୍କର ବିବାହ ସ୍ଥିର ହେଲା । ସେ ଜଣେ ପ୍ରସିଦ୍ଧ ଡାକ୍ତର; କିନ୍ତୁ ସେ ତାମିଲ ନାଇଡ଼ୁ ଗୋଷ୍ଠୀର ଲୋକ । ସରୋଜିନୀ ଉଚ୍ଚ ବ୍ରାହ୍ମଣବଂଶର କନ୍ୟା । ଏମାନଙ୍କ ମଧ୍ୟରେ ବିବାହ ଅନୁଚିତ ହେବ ବୋଲି ତାଙ୍କ ବଂଶର କେହି କେହି ଆପତ୍ତି ଉଠାଇଲେ; କିନ୍ତୁ ଅଘୋରନାଥଙ୍କ ପକ୍ଷରେ ଇଂରେଜ ସମାଜ ଆଦର୍ଶ ଥିବାରୁ ସେ କୌଣସି ଆପତ୍ତି ନ ଶୁଣି ଝିଅକୁ ଡକ୍ଟର ନାଇଡ଼ୁଙ୍କ ସହିତ ବିବାହ ଦେଇଥିଲେ । ସରୋଜିନୀଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ ଜନ୍ମ ହୋଇଥିଲେ ।

ସରୋଜନୀ ଇଂରେଜମାନଙ୍କ ଦୃଷ୍ଟିରେ ଏ ଦେଶକୁ ଦେଖୁଥିଲେ । ଭାରତରେ ନାନା ଭେଦ ପ୍ରଚଳିତ ଅଛି । ଏଠାର ନାରୀମାନେ ପତିତ ଅବସ୍ଥାରେ ପଡ଼ିଛନ୍ତି ବୋଲି ସେ ଭାବୁଥିଲେ । ସେହି କାରଣରୁ ନାରୀଜାତିର ଉନ୍ନତି ପାଇଁ ସରୋଜନୀ ଅଣ୍ଟାଭିଡ଼ି ବାହାରିପଡ଼ିଲେ । ସେତେବେଳେ ଗୋଟିଏ ଭାରତୀୟ ନାରୀ ସମ୍ମିଳନୀ ହୋଇଥିଲା । ସେଥିରେ ସରୋଜନୀ ସଭାପତି ହୋଇଥିଲେ । ନାନା ଉପାୟରେ ସେ ଭାରତୀୟ ନାରୀମାନଙ୍କ ମଧ୍ୟରେ ଚେତନା ଆଣିବା ପାଇଁ ଉଦ୍ୟମ କରୁଥିଲେ ।

୧୯୧୪ରେ ପ୍ରଥମ ମହାଯୁଦ୍ଧ ଲାଗିଲା । ସେତେବେଳେ ଦେଶରେ ନେତାମାନେ ନାନା ସ୍ଥାନରେ ସଭା ସମିତି କରି ଲୋକଙ୍କୁ ସ୍ୱାଧୀନତା ବିଷୟ ବୁଝାଇଲେ । ଏହି ସମୟରେ ସରୋଜନୀଙ୍କ ମନରେ ସ୍ୱାଧୀନତା ପ୍ରତି ଆଗ୍ରହ ଜାତ ହେଲା । ଇଉରୋପର ନାନା ସ୍ୱାଧୀନ ଦେଶ ବୁଲି ସେ ଦେଶର ଲୋକେ କିପରି ଖୁସିରେ ଅଛନ୍ତି, ତାହା ସେ ଜାଣିଥିଲେ । ଆମ ଦେଶ ସ୍ୱାଧୀନ ହେଲେ ଲୋକେ ମଧ୍ୟ ସେହିପରି ସୁଖରେ ରହିବେ ବୋଲି ସେ ଭାବିଲେ । ସେହି ସମୟରେ ସେ କଂଗ୍ରେସରେ ଯୋଗଦେଲେ । ଏଥିପାଇଁ ପରବର୍ତ୍ତୀ କାଳରେ ତାଙ୍କୁ ବହୁ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼ିଥିଲା, ତଥାପି କୌଣସି ଦିନ ସେ କଂଗ୍ରେସରୁ ଅଲଗା ହୋଇ ନ ଥିଲେ ।

୧୯୧୬ ସାଲରେ ଉତ୍ତରପ୍ରଦେଶର ଲକ୍ଷ୍ନୌଠାରେ କଂଗ୍ରେସର ଗୋଟିଏ ଅଧିବେଶନ ବସିଥିଲା । ସେଥିରେ ସରୋଜନୀ ପ୍ରଥମ ଥର ପାଇଁ ଯୋଗ ଦେଇଥିଲେ । ସେ ଅତି ସୁନ୍ଦର ବକ୍ତୃତା ଦେଇପାରୁଥିଲେ । ସଭାରେ ତାଙ୍କର ବକ୍ତୃତା ଶୁଣି ବଡ଼ ବଡ଼

ନେତାମାନେ ତାଙ୍କର ପ୍ରଶଂସା କଲେ । ସେହିଦିନଠାରୁ ସେ ନେତାମାନଙ୍କ ମଧ୍ୟରେ ଉଚ୍ଚ ସ୍ଥାନ ପାଇଥିଲେ ।

ଦେଶର ଗୁରିଆଡ଼େ ବୁଲି ଲୋକଙ୍କୁ ଦେଶ ସେବାରେ ଲଗାଇବା ପାଇଁ ସେ ବାହାରି ପଡ଼ିଲେ । ୧୯୧୭ ସାଲରେ ସେ ଭାରତ ସାରା ବୁଲିଲେ । ସେ ଯେଉଁଠି ବକ୍ତୃତା ଦେଉଥିଲେ, ତାହା ଶୁଣିବାପାଇଁ ହଜାର ହଜାର ଲୋକ ଜମା ହୋଇଯାଉଥିଲେ ।

ଏହି ସମୟରେ ଭାରତବାସୀଙ୍କୁ ସ୍ୱାୟତ୍ତଶାସନ ମିଳୁ ବୋଲି କଂଗ୍ରେସ ପକ୍ଷରୁ ପ୍ରାର୍ଥନା ହେଲା । ବିଲାତ ସରକାରଙ୍କୁ ଏହି କଥା ବୁଝାଇବା ପାଇଁ ଦଳେ ପ୍ରତିନିଧି ଲଣ୍ଡନ ଯିବେ ବୋଲି କଂଗ୍ରେସ ସ୍ଥିର କଲା । ଏହି ପ୍ରତିନିଧିଦଳରେ ସରୋଜିନୀ ଯୋଗଦେଲେ । ସେଠାରେ ସେ ନାନା ସଭାସମିତିରେ ବକ୍ତୃତା ଦେଇ ଭାରତବାସୀଙ୍କ କଥା ଇଂଲଣ୍ଡ ଲୋକଙ୍କୁ ଶୁଣାଇଥିଲେ ।

ଗାନ୍ଧିଜୀଙ୍କ ସହିତ ଯୋଗଦେବା ପରେ ସରୋଜିନୀଙ୍କ ଜୀବନରେ ଗୋଟାଏ ବଡ଼ ପରିବର୍ତ୍ତନ ଆସିଲା । ବିଲାତି ସଭ୍ୟତା ପ୍ରତି ତାଙ୍କ ମୋହ ତୁଟିଗଲା । ଦେଶ ସ୍ୱାଧୀନ ନ ହେଲେ ଲୋକସାଧାରଣଙ୍କ ଅବସ୍ଥା ବଦଳିବ ନାହିଁ ବୋଲି ତାଙ୍କର ଦୃଢ଼ ଧାରଣା ଜନ୍ମିଲା । ସେହି ସ୍ୱାଧୀନତା ଲାଭପାଇଁ ସେ ଜୀବନ ଢାଳିଦେଲେ । ଏ ଦେଶରେ ହିନ୍ଦୁ ମୁସଲମାନ ଆଦି ନାନା ଧର୍ମ ଓ ସମ୍ପ୍ରଦାୟର ଲୋକ ଅଛନ୍ତି । ସେମାନଙ୍କ ଭିତରେ ଏକତା ନ ଆସିଲେ ଦେଶର ସ୍ୱାଧୀନତା ଆସିବାରେ ବାଧା ପଡ଼ିବ ବୋଲି ସେ ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ । ବିଭିନ୍ନ ସମ୍ପ୍ରଦାୟ ଭିତରେ ଏକତା ଆଣିବା ପାଇଁ ସେ ପ୍ରାଣପଣେ ଲାଗି ପଡ଼ିଥିଲେ ।

ବମ୍ବେ ସହରରେ ପ୍ରଥମେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ହେଲା । ସେଠାରେ ଶାନ୍ତି ଆଣିବା ପାଇଁ ସରୋଜିନୀ ଲାଗି ପଡ଼ିଲେ । ତାଙ୍କ ଚେଷ୍ଟା ଫଳରେ ଶାନ୍ତି ଆସିଲା ।

ଗାନ୍ଧିଜୀଙ୍କ ନେତୃତ୍ୱରେ ସେ ଅସହଯୋଗ ଆନ୍ଦୋଳନରେ ମୂଳରୁ ଯୋଗଦେଇଥିଲେ । ସେ ପଞ୍ଜାବର ଅତ୍ୟାଚାରର ପ୍ରତିବାଦ କରି ଇଂରେଜ ସରକାର ଦେଇଥିବା ଉପାଧି ଫେରାଇଦେଲେ । ଭାରତ ସାରା ବୁଲି ସେ ଗାନ୍ଧିଜୀଙ୍କର ନିର୍ଦ୍ଦେଶ ପ୍ରଚାର କଲେ । ଅଧିକ ପରିଶ୍ରମ ଫଳରେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ତା'ପରେ ସେ ସିଂହଳକୁ ଯାଇ ସେଠାରେ କିଛି ଦିନ ବିଶ୍ରାମ ନେଲେ । ସେ ଦେଶରେ ମଧ୍ୟ ସେ ଗାନ୍ଧିଜୀଙ୍କ ବାଣୀ ପ୍ରଚାର କରିଥିଲେ ।

ଅସହଯୋଗ ଆନ୍ଦୋଳନ ଫଳରେ ଗାନ୍ଧିଜୀ ଜେଲରେ ବନ୍ଦୀ ହେଲେ । ସେ ସମୟରେ ଦକ୍ଷିଣ ଆଫ୍ରିକାରେ ଥିବା ଭାରତୀୟମାନଙ୍କ ଅବସ୍ଥା ଅତି ଖରାପ ହୋଇଥିଲା । ତାହାର ପ୍ରତିବାଦ କରି ସେମାନେ ସେଠାରେ ଅହିଂସା ଆନ୍ଦୋଳନ ଆରମ୍ଭ କରିଥିଲେ । ଲୋକେ କର ବନ୍ଦ କରିଦେଲେ । ସେଠାରେ ମଧ୍ୟ ଇଂରେଜ ସରକାର ଭାରତୀୟମାନଙ୍କୁ ମାଡ଼ ଦେଲେ, ଜେଲ ଜରିମାନା କଲେ । ଏହି ସମୟରେ ସରୋଜିନୀ ନାଇଡ଼ୁ ଦକ୍ଷିଣ ଆଫ୍ରିକା ଯାଇ ସେଠାରେ ଥିବା ଭାରତୀୟମାନଙ୍କର ଅଗ୍ରଣୀ ହୋଇଥିଲେ । ତାହାଫଳରେ ସେଠାରେ ଦମନ ଲୀଳା କମି ଆସିଲା । ସେଠାରେ ଥିବା ଇଂରେଜ ସରକାର ମଧ୍ୟ ଲୋକଙ୍କ ଦାବୀ ମାନିନେଲେ । ଦକ୍ଷିଣ ଆଫ୍ରିକାରେ ତାଙ୍କର କାର୍ଯ୍ୟ ଯୋଗୁଁ ଭାରତବାସୀ ତାଙ୍କୁ ପ୍ରଶଂସା କଲେ ଓ ସେଠାରୁ ଫେରି ସେପ୍ଟେମ୍ବରରେ

ସେ ବମ୍ବେ ବନ୍ଦରରେ ଓହ୍ଲାଇଥିଲେ, ସେତେବେଳେ ହଜାର ହଜାର ଲୋକ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ ।

୧୯୨୫ସାଲରେ ଉତ୍ତରପ୍ରଦେଶର କାନପୁରଠାରେ କଂଗ୍ରେସର ଗୋଟିଏ ଅଧିବେଶନ ହୋଇଥିଲା । ଶ୍ରୀମତୀ ସରୋଜିନୀ ସେଥିରେ ସଭାପତି ହୋଇଥିଲେ । ଏ ଅଧିବେଶନରେ ଭାରତବର୍ଷରେ ଇଂରେଜୀ ପରିବର୍ତ୍ତେ ହିନ୍ଦିଭାଷା ଚଳିବାର ପ୍ରସ୍ତାବ ଗୃହୀତ ହୋଇଥିଲା । ଆଜି ହିନ୍ଦି ସ୍ୱାଧୀନ ଭାରତର ରାଷ୍ଟ୍ରଭାଷା ।

୧୯୩୦ରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ପ୍ରଥମେ ଗାନ୍ଧିଜୀ ଓ ତାଙ୍କ ପରେ ଶ୍ରୀମତୀ ସରୋଜିନୀ ଏ ଆନ୍ଦୋଳନରେ ଅଗ୍ରଣୀ ହୋଇଥିଲେ । ଗୁଜୁରାଟର ଧର୍ଷଣାଠାରେ ଯେଉଁ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା, ଭାରତର ସ୍ୱାଧୀନତା ଇତିହାସରେ ତାହା ଚିରକାଳ ଲିପିବଦ୍ଧ ହୋଇ ରହିବ । ଏଠାରେ ଶ୍ରୀମତୀ ସରୋଜିନୀ ଯେଉଁ ବୀରତ୍ୱ ଦେଖାଇଲେ, ତାହାର ତୁଳନା ପୃଥିବୀରେ ନାହିଁ । ଏହି ସତ୍ୟାଗ୍ରହ ଫଳରେ ସେ ଇଂରେଜ ସରକାର ହାତରେ ବନ୍ଦୀ ହୋଇଥିଲେ ।

ଗାନ୍ଧିଜୀଙ୍କ ସହିତ ସେ ମଧ୍ୟ ଗୋଲଟେବୁଲ ବୈଠକରେ ଯୋଗଦେଇଥିଲେ । ଯେଉଁ ଇଂରେଜ ଜାତି ପ୍ରତି ପ୍ରଥମେ ତାଙ୍କର ବିଶେଷ ଶ୍ରଦ୍ଧା ଥିଲା, ଗୋଲଟେବୁଲ ବୈଠକରେ ଯୋଗ ଦେବା ପରେ ତାହା ସମ୍ପୂର୍ଣ୍ଣରୂପେ ଦୂରୀଭୂତ ହୋଇଗଲା ।

୧୯୪୨ରେ ଭାରତରେ ଶେଷ ସ୍ୱାଧୀନତା ଯୁଦ୍ଧ ହୋଇଥିଲା । ଶ୍ରୀମତୀ ସରୋଜିନୀ ଏଥିରେ ଯୋଗଦାନକରି ଇଂରେଜଙ୍କ ହାତରେ ବନ୍ଦୀ ହୋଇଥିଲେ । ୧୯୪୭ସାଲ ଅଗଷ୍ଟ ମାସ ୧୫ ତାରିଖ ଦିନ

ଭାରତ ସ୍ୱାଧୀନ ହେଲା । ଶ୍ରୀମତୀ ସରୋଜନୀଙ୍କର ଆଜୀବନ ସାଧନା ସଫଳ ହୋଇଥିଲା । ସ୍ୱାଧୀନ ଭାରତର ଗୋଟିଏ ବଡ଼ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ଉତ୍ତରପ୍ରଦେଶର ଲାଟ ପଦରେ ସେ ନିଯୁକ୍ତ ହେଲେ । ପୃଥିବୀର ଅନ୍ୟ କୌଣସି ଦେଶର କୌଣସି ନାରୀ ଏଡ଼େ ବଡ଼ ଦାୟିତ୍ୱରେ ଅଛନ୍ତି ବୋଲି ବର୍ତ୍ତମାନ ସମୟରେ ଦେଖାଯାଏ ନାହିଁ ।

ଏ କାର୍ଯ୍ୟ କରୁ କରୁ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ଲାଟଭାବରେ ଗୁରୁଦାୟିତ୍ୱ ତୁଲାଇବାକୁ ତାଙ୍କୁ ବିଶେଷ ପରିଶ୍ରମ କରିବାକୁ ପଡ଼ୁଥିଲା । ସେତେବେଳକୁ ତାଙ୍କର ବୟସ ମଧ୍ୟ ୭୦ ବର୍ଷ ହୋଇଥିଲା । ୧୯୪୯ ସାଲ ମାର୍ଚ୍ଚ ମାସ ୨ ତାରିଖ ଦିନ ଶ୍ରୀମତୀ ସରୋଜନୀ ନାଇଡ଼ୁ ଚିର ବିଶ୍ରାମ ଲାଭ କଲେ ।

ଶ୍ରୀମତୀ ସରୋଜନୀ କବି ଥିଲେ । ସ୍ୱାଧୀନତା ଯୁଦ୍ଧରେ ଯୋଗଦେଇ ତାଙ୍କ କବି-ପ୍ରତିଭା ଦେଶବାସୀଙ୍କ ସେବାରେ ବୁଡ଼ି ଯାଇଥିଲା । ନାନା ଦୁଃଖକଷ୍ଟ ବରଣ କରି ସେ ଦେଶର ସ୍ୱାଧୀନତା ପାଇଁ ଯେଉଁ ପ୍ରାଣପାତ ପରିଶ୍ରମ କରିଯାଇଛନ୍ତି, ତାହା ଅମର ଅକ୍ଷରରେ ଚିରକାଳ ଲିପିବଦ୍ଧ ରହିବ ।

---

# ରାଜାଜୀ

ଭାରତର ପାର୍ଲିଆମେଣ୍ଟ ସଭାରେ ବରାବର ତର୍କ ବିତର୍କ ଚାଲେ । ଦୁଇ ପକ୍ଷର ସଭ୍ୟମାନେ ପରସ୍ପରଙ୍କ ମତ କଟାକଟି କରି ନିଜ ମତକୁ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରନ୍ତି । ସେତେବେଳେ ଶ୍ରୀ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଭାରତ ସରକାରଙ୍କ ସ୍ୱରାଷ୍ଟ୍ରମନ୍ତ୍ରୀ । ଗୋଟାଏ ଆଇନକୁ ସମର୍ଥନ କରି ସେ ଏପରି ଯୁକ୍ତି ଦେଖାଇଥିଲେ ଯେ, ବିରୁଦ୍ଧ ପକ୍ଷର ଲୋକଙ୍କ ପାଇଁ ତାହା କାଟିବା ସହଜ ହୋଇ ନ ଥିଲା । ଏହି ସମୟରେ ଜଣେ ସଭ୍ୟ ଉଠି ରାଜଗୋପାଳାଚାରୀଙ୍କୁ ଲକ୍ଷ୍ୟ କରି ସେ ଚାଣକ୍ୟ ବୋଲି କହିଥିଲେ । ସ୍ୱରାଷ୍ଟ୍ରମନ୍ତ୍ରୀ ଏହାର ଉତ୍ତରରେ କହିଲେ, "ଚାଣକ୍ୟର ଆଉ ଗୋଟିଏ ନାଆଁ ଅଛି । ସେ କୌଟିଲ୍ୟ ଓ ବିଷ୍ଣୁଶର୍ମା ବୋଲି ମଧ୍ୟ ପରିଚିତ । ସେ ପ୍ରସିଦ୍ଧ ଲୋକ, ମୁଁ ତାଙ୍କ ନାମର ଉପଯୁକ୍ତ ନୁହେଁ ।"

ଶ୍ରୀ ଗୋପାଳାଚାରୀ ପ୍ରକୃତରେ ଚାଣକ୍ୟଙ୍କ ପରି ରାଜନୀତି ବିଷୟରେ ଜଣେ ବଡ଼ ଦକ୍ଷ ଲୋକ । ତାଙ୍କ ବୁଦ୍ଧି ଅତି ତୀକ୍ଷ୍ଣ, ବିଚାରଶକ୍ତି ଅତି ସୂକ୍ଷ୍ମ । ପୁରାକାଳର ମୁନି ଋଷିଙ୍କ ପରି ସେ ଜଣେ ପୂଜ୍ୟ ବ୍ୟକ୍ତି ।

ସେ ୧୮୭୯ ମସିହାରେ ମାନ୍ଦ୍ରାଜ ରାଜ୍ୟର ସାଲେମ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଚକ୍ରବର୍ତ୍ତୀ ଆୟାଙ୍ଗାର । ତାଙ୍କର ଛଅଗୋଟି ପୁଅ, ରାଜାଜୀ ସବୁଠାରୁ ସାନ ।

ରାଜାଜୀ ପିଲାଦିନେ ବାଡ଼ିବୁଆ ଧରି ଖେଳିବାକୁ ଖୁସି ପାଉଥିଲେ । ପାଞ୍ଚବର୍ଷ ବୟସରେ ତାଙ୍କୁ ଗାଁ ଗୁରୁଶାଳୀକୁ ପଠାଗଲା । ଶିକ୍ଷା ପ୍ରତି ତାଙ୍କର ଅଧିକ ଆଗ୍ରହ ଥାଏ । କେତେକ



ପିଲା ପଢ଼ିବାକୁ ଯିବାକୁ ଡରନ୍ତି; କିନ୍ତୁ ରାଜାଜୀ ଗୁରୁଶାଳୀକୁ ଯିବାପାଇଁ ଆଗରୁ ବହିପତ୍ର ଧରି ସଜହୋଇ ରହିଥାନ୍ତି । ଛୁଟିଦିନ ସେ ଘରେ ବସି ବହି ପଢ଼ନ୍ତି । ଏ ବୟସରେ ତାଙ୍କର ଏପରି ମନ ଲାଗିଥାଏ ଯେ, ବାପାଙ୍କଠାରୁ ପଇସା ପାଇଲେ ସେଥିରେ ବହି କିଣି ପକାନ୍ତି ।

ଚାଟଶାଳୀ ପଢ଼ା ଶେଷ ହେଲାପରେ ରାଜାଜୀ ଓ ତାଙ୍କର ଦୁଇ ଭାଇ ହାଇସ୍କୁଲରେ ପଢ଼ିଲେ । ସେତେବେଳେ ତାଙ୍କ ଉନ୍ନତି ଘର ବନ୍ଧ ପଦରେ ପୂରିଯାଇଥିଲା ।

ଉଚ୍ଚ ଶିକ୍ଷା ପାଇବାପାଇଁ ତାଙ୍କୁ ବାଙ୍ଗାଲୋରକୁ ପଠାଗଲା । ସେଠାରେ ସେ ସେଣ୍ଟ୍ରାଲ ହିନ୍ଦୁ କଲେଜରେ ବି.ଏ. ପଢ଼ିଲେ । ସେ ଖୁବ୍ ବୁଦ୍ଧିମାନ୍ ଥିଲେ । ଯେଉଁ ପାଠ ଆଉ ସବୁ ପିଲାଙ୍କ ପକ୍ଷରେ କଷ୍ଟକର ଥିଲା, ସେ ସବୁକୁ ସେ ସହଜରେ ମନେ ରଖିପାରୁଥିଲେ । ସେ ବଡ଼ ମେଳାପୀ ଥିଲେ । ସେଥିପାଇଁ ଅଧ୍ୟାପକ ଓ ସହପାଠୀମାନେ ତାଙ୍କୁ ସୁଖ ପାଉଥିଲେ । ଏପରି ଭାବରେ ସେ ଇଂରେଜୀଭାଷା ଆୟତ୍ତ କରିଥିଲେ ଯେ, ତାହା ଦେଖି ତାଙ୍କର ଇଂରେଜୀ ଅଧ୍ୟାପକ ମଧ୍ୟ ଆଶ୍ଚର୍ଯ୍ୟ ହୋଇଯାଉଥିଲେ ।

କଲେଜରୁ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ମାନ୍ଦ୍ରାଜରେ ଓକିଲାତି ପଢ଼ିଲେ । ସେଥିରେ ଉତ୍ତୀର୍ଣ୍ଣ ହେବା ଉତ୍ତାରୁ ସେ ସାଲେମ୍‌ଠାରେ ଓକିଲାତି ଆରମ୍ଭ କଲେ ।

ରାଜାଜୀ ବଡ଼ ବିଚକ୍ଷଣ ଲୋକ । ତାଙ୍କର ଓକିଲାତି ବ୍ୟବସାୟ ସହଜରେ ବଢ଼ିଗଲା । ଅଳ୍ପ ସମୟ ଭିତରେ ସେ ବହୁତ ଟଙ୍କା ରୋଜଗାର କରି ପାରିଲେ । ଭଲ ଓକିଲ ବୋଲି ଚାରିଆଡ଼େ ତାଙ୍କର ନାଁ ଶୁଣାଗଲା ।

ଓକିଲାତି ସଙ୍ଗେ ସଙ୍ଗେ ସେ ଦେଶକାମ କରୁଥିଲେ । କେବଳ ପଇସା ରୋଜଗାର କରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା । ଲୋକଙ୍କର କିପରି ଭଲ ହେବ, ସେମାନେ କିପରି ଭଲରେ ରହିବେ ଏ କଥା ସେ ବରାବର ଚିନ୍ତା କରୁଥିଲେ ।

ରାଜାଜୀ ବ୍ରାହ୍ମଣ । ମାନ୍ଦ୍ରାଜର ବ୍ରାହ୍ମଣମାନେ ବଡ଼ ନୈଷ୍ଠିକ । ପୁଣି ତାଙ୍କ ଅଞ୍ଚଳରେ ଛୁଆଁ ଅଛୁଆଁ ଭେଦ ବେଶି । ରାଜାଜୀ

ସାଲେମ୍ ମ୍ୟୁନସିପାଲଟିର ଚେୟାରମ୍ୟାନ ହୋଇ ଅସ୍ପୃଶ୍ୟତା ପାପ ଦୂର କରିବାରେ ଲାଗିଲେ । ଏଥିପାଇଁ ଲୋକେ ତାଙ୍କୁ ନିନ୍ଦା କଲେ, ତଥାପି ସେ ନିଜ ସଙ୍କଳ୍ପରୁ ଟଳିଲେ ନାହିଁ ।

କିଛି ଦିନ ପରେ ସାଲେମ୍‌ରୁ ଯାଇ ସେ ମାନ୍ଦ୍ରାଜରେ ଓକିଲାତି ବ୍ୟବସାୟ ଆରମ୍ଭ କରିଥିଲେ । ସେଠାରେ ମଧ୍ୟ ତାଙ୍କର ଖ୍ୟାତି ବଢ଼ିଲା । ସେ ଅଳ୍ପ ସମୟ ଭିତରେ ଯଥେଷ୍ଟ ଆୟ କରିପାରିଲେ । ଏହି ସମୟରେ ମାନ୍ଦ୍ରାଜରେ ମହାତ୍ମାଗାନ୍ଧିଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ସେହି ଦିନଠାରୁ ସେ ଗାନ୍ଧିଜୀଙ୍କ ସହକର୍ମୀ ହୋଇ ରହିଲେ । ଅସହଯୋଗ ଆନ୍ଦୋଳନବେଳେ ସେ ଓକିଲାତି ବ୍ୟବସାୟ ଛାଡ଼ି କଂଗ୍ରେସରେ ଯୋଗଦେଲେ । ୧୯୨୩ ମସିହାରେ ଗାନ୍ଧିଜୀ ଯେତେବେଳେ ଜେଲରେ ବନ୍ଦୀ ଥିଲେ ରାଜଗୋପାଳାଚାରୀ 'ୟଙ୍ଗ ଇଣ୍ଡିଆ' କାଗଜର ସମ୍ପାଦକ ହୋଇଥିଲେ ।

୧୯୩୭ ମସିହାରେ ଯେଉଁ ନିର୍ବାଚନ ହେଲା; ସେଥିରେ କଂଗ୍ରେସର ଲୋକେ ବ୍ୟବସ୍ଥା-ପରିଷଦମାନଙ୍କରେ ପଶିଲେ । ମାନ୍ଦ୍ରାଜରେ କଂଗ୍ରେସର ଲୋକେ ନିର୍ବାଚନରେ ଜିଣି କ୍ଷମତା ହାସଲ କଲେ । ସେତେବେଳେ ରାଜାଜୀ ମାନ୍ଦ୍ରାଜର ପ୍ରଧାନମନ୍ତ୍ରୀ ନିର୍ବାଚିତ ହୋଇଥିଲେ ।

ତାଙ୍କର ଏ କାମଦ୍ୱାରା ସେ ଅନ୍ୟାନ୍ୟ ପ୍ରଦେଶକୁ ଆଦର୍ଶ ଦେଖାଇଥିଲେ । ନିଶା ନିବାରଣ, ଅସ୍ପୃଶ୍ୟତା ବର୍ଜନ; ଖଦୀ ପ୍ରଚାର ଆଦି ସବୁ ଗଠନମୂଳକ କାମ ସରକାର ଜରିଆରେ ଚଳାଇଲେ ।

ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେବାରୁ କଂଗ୍ରେସ ମନ୍ତ୍ରିମାନେ ଇସ୍ତଫା ଦେଲେ । ରାଜାଜୀ ମଧ୍ୟ ମନ୍ତ୍ରିପଦ ଛାଡ଼ିଦେଲେ । ଦାୟିତ୍ୱ ନେଇ କିପରି ଦକ୍ଷତା ସହିତ କାର୍ଯ୍ୟ କରାଯାଏ, ରାଜାଜୀ ତାହାର ଆଦର୍ଶ ଦେଖାଇଥିଲେ ।

ଇଂରେଜମାନେ ଭାରତ ଛାଡ଼ିବା ସମୟରେ ଶ୍ରୀଯୁକ୍ତ ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ କେନ୍ଦ୍ର ସରକାରରେ ମନ୍ତ୍ରିମଣ୍ଡଳ ଗଢ଼ାଗଲା । ରାଜାଜୀ ସେଥିରେ ମନ୍ତ୍ରୀଥିଲେ ।

ସ୍ୱାଧୀନତା ଲାଭପରେ ବ୍ରିଟିଶ ବଡ଼ଲାଟ ଲର୍ଡ଼ ମାଉଣ୍ଟବ୍ୟାଟେନ୍ କାର୍ଯ୍ୟଭାର ଛାଡ଼ିଲେ । ସେ କାର୍ଯ୍ୟ ତୁଲାଇବା ପାଇଁ ରାଜାଜୀଙ୍କୁ ଡାକରାପଡ଼ିଲା । ସେ ବଡ଼ଲାଟ ଆସନରେ ବସିଲେ । ରାଜାଜୀ ଭାରତର ଶେଷ ବଡ଼ଲାଟ । ତାଙ୍କପରେ ସେ ପଦ ଆଉ ରହିଲା ନାହିଁ । ୧୯୪୭ ମସିହା ନଭେମ୍ବର ମାସ ୯ ତାରିଖଠାରୁ ୧୯୫୦ ମସିହା ଜାନୁୟାରୀ ମାସ ୨୬ ତାରିଖ ପର୍ଯ୍ୟନ୍ତ ସେ ଭାରତର ବଡ଼ଲାଟ ହୋଇଥିଲେ ।

ତତ୍ପରେ ସେ ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ରୂପେ କର୍ତ୍ତବ୍ୟ କାର୍ଯ୍ୟ କରିଥିଲେ । ପରବର୍ତ୍ତୀ ନିର୍ବାଚନରେ ମାନ୍ଦ୍ରାଜର ପରିସ୍ଥିତି ଖରାପ ହୋଇପଡ଼ିଥିଲା । ତାଙ୍କ ନେତୃତ୍ୱରେ ସେଠାରେ ଅବସ୍ଥାର ଉନ୍ନତି ଘଟିବାପରେ ସେ ରାଜନୀତିକ୍ଷେତ୍ରରୁ ଅବସର ଗ୍ରହଣକରି ଶାସ୍ତ୍ରଚର୍ଚ୍ଚା କରୁଥିଲେ । ବର୍ତ୍ତମାନ ସ୍ୱତନ୍ତ୍ର ଦଳ ନାମରେ ଗୋଟିଏ ରାଜନୈତିକ ଦଳ ଗଠନ କରି ତାହା ସେ ପରିଚାଳନା କରୁଛନ୍ତି ।

———

# ଡକ୍ଟର ରାଜେନ୍ଦ୍ର ପ୍ରସାଦ

ଭାରତର ରାଷ୍ଟ୍ରପତି ସମସ୍ତଙ୍କର ପୂଜ୍ୟ, ସମସ୍ତଙ୍କର ନମସ୍ୟ । ସ୍ୱାଧୀନ ଦେଶରେ ସେ ପ୍ରଥମ ନାଗରିକ । ଭାରତବର୍ଷରେ ଏହାଠାରୁ ବଡ଼ ସମ୍ମାନ ବା ଗୌରବ ଆଉ କିଛି ନାହିଁ ।

ସ୍ୱାଧୀନ ଭାରତରେ ପ୍ରଥମ ରାଷ୍ଟ୍ରପତି ଶ୍ରୀ ରାଜେନ୍ଦ୍ର ପ୍ରସାଦ । ସେ ବିହାର ପ୍ରଦେଶରେ ୧୮୮୪ ମସିହା ଡିସେମ୍ବର ମାସ ୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ମୁନ୍‌ସି ମହାଦେବ ସହାୟ । ପାଞ୍ଚ ଭାଇଭଉଣୀରେ ସେ ସବାସାନ । ସେଥିପାଇଁ ବାପା ମା ତାଙ୍କୁ ବଡ଼ ଆଦର କରୁଥିଲେ ।

ପିଲାଦିନୁ ସେ ଅତି ବୁଦ୍ଧିମାନ । ସ୍କୁଲରେ ପଢ଼ିବା ସମୟରେ ସେ ସବୁ ପରୀକ୍ଷାରେ ପ୍ରଥମ ହେଉଥିଲେ କେବଳ ସେତିକି ନୁହେଁ ସେ ବଡ଼ ଧୀର ଓ ମେଳାପି ଲୋକ ।

ସେ ୧୯୧୦ ରେ ଓକିଲାତି ପାଶକରି କଲିକତା ହାଇ-କୋର୍ଟରେ ଓକିଲାତି ଆରମ୍ଭ କରିଥିଲେ । ପଢ଼ିବା ପ୍ରତି ପିଲାଦିନୁ ତାଙ୍କର ବିଶେଷ ଆଗ୍ରହ ଥିଲା, ତେଣୁ କଚେରୀରେ ଓକିଲାତି କରିବା ସଙ୍ଗେ ସଙ୍ଗେ ସେ ଆଇନ ମଧ୍ୟ ପଢ଼ୁଥିଲେ ଓ ଆଇନର ସର୍ବୋଚ୍ଚ ପରୀକ୍ଷା ଏମ୍.ଏଲ୍. ରେ ପ୍ରଥମ ସ୍ଥାନ ଅଧିକାର କରି ପାଶ କଲେ ।

ସେ ସମୟରେ ବଙ୍ଗଳା, ବିହାର, ଓଡ଼ିଶା ମିଶି ଗୋଟିଏ ପ୍ରଦେଶ ଥିଲା । ୧୯୧୨ ରେ ବଙ୍ଗଳାକୁ ଛାଡ଼ି ବିହାର-ଓଡ଼ିଶା ଅଲଗା ପ୍ରଦେଶ ହେଲା । ପାଟଣାରେ ହାଇକୋର୍ଟ ବସିଲା । ରାଜେନ୍ଦ୍ର ପ୍ରସାଦ ପାଟଣାରେ ଓକିଲାତି ଆରମ୍ଭ କଲେ ।

ଅଳ୍ପ ଦିନ ମଧ୍ୟରେ ତାଙ୍କର ଖ୍ୟାତି ଚାରିଆଡ଼େ ବ୍ୟାପିଗଲା । ଏହି ସମୟରେ ମହାତ୍ମା ଗାନ୍ଧିଙ୍କ ସହିତ ତାଙ୍କର ପ୍ରଥମ ସାକ୍ଷାତ । ତା'ପରେ ତାଙ୍କର ଜୀବନର ଧାରା ସମ୍ପୂର୍ଣ୍ଣ ବଦଳି ଯାଇଥିଲା ।

ଚମ୍ପାରଣ ଜିଲାରେ ନୀଳଚାଷ ହେଉଥିଲା । ଏ ନୀଳଗଛ ରସରୁ ନୀଳବଢ଼ି ରଙ୍ଗ ତିଆରିହୁଏ । ଗୋରା ସାହେବଙ୍କ ହାତରେ ଏ ଚାଷର ଏକଚାଟିଆ ଅଧିକାରଥିଲା । ସେମାନେ ଚାଷୀମାନଙ୍କ ଉପରେ ଅତ୍ୟାଚାର କରୁଥିଲେ । ମହାତ୍ମାଗାନ୍ଧୀ ଏ ସମ୍ବାଦପାଇ ଚମ୍ପାରଣକୁ ଗଲେ । ସରକାରଙ୍କ ନିକଟରେ ଆବେଦନ ନିବେଦନ ବିଫଳ ହେବାରୁ ଗାନ୍ଧିଜୀ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ । ରାଜେନ୍ଦ୍ର ପ୍ରସାଦ ଏହି ଆନ୍ଦୋଳନ ସମୟରେ ତାଙ୍କର ସହକର୍ମୀ ଥିଲେ । ସେ ଗାନ୍ଧିଙ୍କର ପ୍ରଥମ ଶିଷ୍ୟ । ଚମ୍ପାରଣ ସତ୍ୟାଗ୍ରହ ଶେଷ ହେଲା; କିନ୍ତୁ ରାଜେନ୍ଦ୍ରପ୍ରସାଦ ମହାତ୍ମା ଗାନ୍ଧୀଙ୍କର ସହକର୍ମୀ ହୋଇ ରହିଗଲେ ।

୧୯୨୨ରେ ମହାତ୍ମାଗାନ୍ଧୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ଏ ଆନ୍ଦୋଳନ ଫଳରେ ରାଜେନ୍ଦ୍ରପ୍ରସାଦ ଓକିଲାତି ବ୍ୟବସାୟ ଛାଡ଼ିଦେଲେ ।

୧୯୨୨ରେ ବିହାର ପ୍ରଦେଶର ଗୟାଠାରେ କଂଗ୍ରେସ ଅଧିବେଶନ ହୋଇଥିଲା । ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଏଥିରେ ସଭାପତି ହୋଇଥିଲେ । ଏହି ଅଧିବେଶନକୁ ସଫଳ କରିବା ପାଇଁ ରାଜେନ୍ଦ୍ରପ୍ରସାଦ ଦିନରାତି କାମ କରିଥିଲେ । ସେହି ବର୍ଷ ସେ କଂଗ୍ରେସର ସାଧାରଣ ସମ୍ପାଦକ ନିର୍ବାଚିତ ହେଲେ ।

ଅସହଯୋଗ ଆନ୍ଦୋଳନ ଯୋଗୁଁ ଛାତ୍ରମାନେ ବ୍ରିଟିଶ ସରକାର ସ୍ଥାପିତ ସ୍କୁଲ କଲେଜ ଛାଡ଼ିଦେଇଥିଲେ । ସେମାନଙ୍କ ପଢ଼ାପଢ଼ି ପାଇଁ ଦେଶରେ ଘରେଆଡ଼େ ଜାତୀୟ ବିଦ୍ୟାଳୟମାନ ସ୍ଥାପିତ



ହୋଇଥିଲା । ଏହି ସମୟରେ ରାଜେନ୍ଦ୍ରପ୍ରସାଦ ପାଟଣାଠାରେ ବିହାର ବିଦ୍ୟାପୀଠ ନାମରେ ଗୋଟିଏ ଜାତୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ ।

୧୯୩୦ରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ସେଥିରେ ହଜାର ହଜାର ଲୋକ ଜେଲଗଲେ । ଏହି ସମୟରେ ରାଜେନ୍ଦ୍ର ପ୍ରସାଦଙ୍କୁ ଗିରଫ କରି ଜେଲଦଣ୍ଡ ଦିଆଗଲା । ସେ ହଜାରିବାଗ ଜେଲରେ ବନ୍ଦୀ ହେଲେ । ସେଠାରେ ଓଡ଼ିଶାର ଜେଲଖାନା ଭିତରେ କୌଣସି ଲୋକ ଦେହ ଦୁଃଖରେ ପଡ଼ିଲେ ରାଜେନ୍ଦ୍ରପ୍ରସାଦ ନିଜେ ଯାଇ ତାଙ୍କର ସେବା ଶୁଶ୍ରୂଷା କରୁଥିଲେ । ତେଣୁ ସାଧାରଣ କଏଦୀମାନେ ମଧ୍ୟ ତାଙ୍କୁ ଦେବତା ପରି ଭକ୍ତି କରୁଥିଲେ ।

ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ରାଜେନ୍ଦ୍ରପ୍ରସାଦ ବାରମ୍ବାର ଦଣ୍ଡ ପାଇଥିଲେ । ସେ ଦୁଇ ଥର ପୁଲିସଠାରୁ ଲାଠିମାଡ଼ ସହିଥିଲେ । ତାଙ୍କୁ ନାନା ଦୁଃଖ କଷ୍ଟରେ

ସମ୍ମୁଖୀନ ହେବାକୁ ପଡ଼ିଥିଲା; କିନ୍ତୁ ସେ କେବେହେଲେ ଗାନ୍ଧିଜୀଙ୍କ କଥାରୁ ବାହାର ହୋଇ ନ ଥିଲେ ।

୧୯୩୨ ମସିହାରେ ପୁଣାଠାରେ କଂଗ୍ରେସ ଅଧିବେଶନ ବସିବା ପାଇଁ ସ୍ଥିର ହୋଇଥିଲା । ଏଥିରେ ରାଜେନ୍ଦ୍ର ପ୍ରସାଦ ସଭାପତି ହେବା ପାଇଁ ପ୍ରସ୍ତାବ କରାଯାଇଥିଲା; ମାତ୍ର ସେତେବେଳେ ଇଂରେଜ ସରକାର କଂଗ୍ରେସକୁ ବେଆଇନ ଘୋଷଣା କରିବାରୁ ଆଉ ଅଧିବେଶନ ହୋଇପାରିଲା ନାହିଁ । ଇଂରେଜ ସରକାର ରାଜେନ୍ଦ୍ର-ପ୍ରସାଦଙ୍କୁ ଗିରଫ କରି ଜେଲ ଦେଲେ ।

ଜେଲରୁ ଫେରି ରାଜେନ୍ଦ୍ର ପ୍ରସାଦ ମହାତ୍ମା ଗାନ୍ଧିଙ୍କର ଗିରଫର ପ୍ରତିବାଦ କରି ଆନ୍ଦୋଳନ ଚଳାଇଲେ । ଭାରତର ଚାରିଆଡ଼େ ସଭାସମିତି ହୋଇ ଗାନ୍ଧିଜୀଙ୍କ ଗିରଫର ନିନ୍ଦା କରାଗଲା । ଇଂରେଜ ସରକାର ବିରକ୍ତ ହୋଇ ପୁଣି ରାଜେନ୍ଦ୍ର ପ୍ରସାଦଙ୍କୁ ଧରି ନେଇ ଜେଲରେ ବନ୍ଦୀ କଲେ ।

ଏହି ସମୟରେ ବିହାରରେ ଭୀଷଣ ଭୂମିକମ୍ପ ହେଲା । ତାହା ଫଳରେ ଘରଗଣ୍ଡା ସବୁ ଧ୍ୱଂସ ପାଇଗଲା । ହଜାର ହଜାର ଲୋକ ମଲେ । ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ନଷ୍ଟ ହୋଇଗଲା । ଚାରିଆଡ଼େ ହାହାକାର ପଡ଼ିଗଲା । ସେତେବେଳେ ରାଜେନ୍ଦ୍ରପ୍ରସାଦ ଜେଲରେ ବନ୍ଦୀ । ତାଙ୍କ ସାହାଯ୍ୟ ବିନା ଅବସ୍ଥା ସମ୍ଭାଳି ହେବ ନାହିଁ ବୋଲି ସରକାର ତାଙ୍କୁ ଖଲାସ କରିଦେଲେ । ଜେଲରୁ ଆସି ସଙ୍ଗେ ସଙ୍ଗେ ସେ ଲୋକମାନଙ୍କର ସେବା କାର୍ଯ୍ୟରେ ଲାଗିଲେ । ତାହା ଫଳରେ ଲକ୍ଷ ଲକ୍ଷ ଲୋକ ରକ୍ଷା ପାଇଗଲେ ।

ବମ୍ବେ କଂଗ୍ରେସ ଅଧିବେଶନରେ ରାଜେନ୍ଦ୍ରପ୍ରସାଦ ସଭାପତି ହୋଇଥିଲେ । କଂଗ୍ରେସ ଲୋକେ ବ୍ୟବସ୍ଥା ସଭାରେ ପଶି ଶାସନ ଭାର ନେବେ ବୋଲି ସେଥିରେ ସ୍ଥିର ହୋଇଥିଲା । ଏହା ଫଳରେ

ଭାରତର ୧୧ଟି ପ୍ରଦେଶ ମଧ୍ୟରୁ ୮ଟି ପ୍ରଦେଶରେ ଶାସନ ଭାର କଂଗ୍ରେସ ଲୋକଙ୍କ ହାତରେ ରହିଲା ।

୧୯୪୨ ମସିହାରେ ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ ହୋଇଥିଲା । ସେଥିରେ ମଧ୍ୟ ମହାତ୍ମା ଗାନ୍ଧି ଏବଂ ଅନ୍ୟାନ୍ୟ ନେତା-ମାନଙ୍କ ସହିତ ରାଜେନ୍ଦ୍ରପ୍ରସାଦ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦୀ ହୋଇଥିଲେ । ଇଂରେଜମାନେ ଭାରତ ଛାଡ଼ିବା ଆଗରୁ ଦେଶରେ ଖାଦ୍ୟସଙ୍କଟ ଉପସ୍ଥିତ ହେଲା । ଏହି ସମୟରେ ଜବାହରଲାଲ ନେହରୁଙ୍କ ନେତୃତ୍ୱରେ କେନ୍ଦ୍ରରେ ଗୋଟିଏ ଅସ୍ଥାୟୀ ସରକାର ଗଠିତ ହୋଇଥିଲା । ରାଜେନ୍ଦ୍ରପ୍ରସାଦ ସେତେବେଳେ ଖାଦ୍ୟମନ୍ତ୍ରୀ ଥାଇ ଦେଶର ଖାଦ୍ୟ ପରିସ୍ଥିତିକୁ ସମ୍ଭାଳିବା ଦିଗରେ ବିଶେଷ ଯତ୍ନ କରିଥିଲେ । ଭାରତର ଶାସନଆଇନ ଗଢ଼ିବା ପାଇଁ ଯେତେବେଳେ ବିଧାନସଭା ଗଠିତ ହେଲା, ରାଜେନ୍ଦ୍ରପ୍ରସାଦ ତାହାର ସଭାପତି ହେଲେ । ଆମର ଯେଉଁ ସଂବିଧାନ ଅନୁସାରେ ଦେଶ ଚାଲୁଛି, ତାହା ତାଙ୍କ ସଭାପତିତ୍ୱରେ ପ୍ରସ୍ତୁତ ହୋଇଥିଲା । ଏ ଶାସନ ଆଇନ ଚାଲିବା ଫଳରେ ବଡ଼ଲାଟ ପଦ ଉଠିଗଲା । ଶ୍ରୀଯୁକ୍ତ ରାଜେନ୍ଦ୍ରପ୍ରସାଦ ଭାରତର ପ୍ରଥମ ରାଷ୍ଟ୍ରପତି ହେଲେ । ଦୀର୍ଘ ଦଶ ବର୍ଷ ରାଷ୍ଟ୍ରପତିଭାବରେ କାର୍ଯ୍ୟ ଚଳାଇ ସେ ଅବସର ଗ୍ରହଣ କରିଥିଲେ ।

ରାଷ୍ଟ୍ରପତି ରାଜେନ୍ଦ୍ରପ୍ରସାଦ ସାତୋଟି ଭାଷାରେ ପଣ୍ଡିତ ଥିଲେ । ଆଇନରେ ତାଙ୍କର ଅଗାଧ ବ୍ୟୁତ୍ପତ୍ତି ଥିଲା । ଭାରତର ରାଷ୍ଟ୍ରପତିହୋଇ ମଧ୍ୟ ସେ ଅତି ସାଧାରଣ ଭାବରେ ଚାଲୁଥିଲେ । ଦୀନଦରିଦ୍ରଙ୍କ ପାଇଁ ତାଙ୍କର ଅଶେଷ ସହାନୁଭୂତି ଥିଲା । ସେ ଜଣେ ଆଦର୍ଶ ପୁରୁଷ ଥିଲେ ।

୧୯୬୨ ମସିହାରେ ଡକ୍ଟର ରାଜେନ୍ଦ୍ରପ୍ରସାଦ କାର୍ଯ୍ୟରୁ ଅବସର ଗ୍ରହଣ କଲେ । ୧୯୬୩ ମସିହା ଫେବୃୟାରୀ ମାସରେ ସେ ଇହଲୀଳା ସମ୍ବରଣ କଲେ ।

—*—

# ପଣ୍ଡିତ ଜବାହରଲାଲ ନେହେରୁ

ପଣ୍ଡିତ ଜବାହରଲାଲ ନେହେରୁ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଥିଲେ । ଦୀର୍ଘ ୧୭ ବର୍ଷ କାଳ ଏଡ଼େ ବଡ଼ ଦେଶ ଚଳାଇବା ଭାର ତାଙ୍କ ଉପରେ ନ୍ୟସ୍ତ ଥିଲା । ଭାରତର ସ୍ୱାଧୀନତା ଆନ୍ଦୋଳନର ସେ ଜଣେ ବଡ଼ ନେତା ଥିଲେ । ଦେଶ ପାଇଁ ସେ ଅନେକ ଦୁଃଖକଷ୍ଟ ସହିଥିଲେ । ଇଂରେଜ ସରକାରଙ୍କ କୋପ-ଦୃଷ୍ଟିରେ ପଡ଼ି ତାଙ୍କୁ ଅନେକଥର ଜେଲଖାନାକୁ ଯିବାକୁ ପଡିଥିଲା । ସ୍ୱାଧୀନତା ଯୁଦ୍ଧରେ ସୈନିକ ଭାବରେ ସେ ବହୁତ ତ୍ୟାଗ କରିଥିଲେ । ଜବାହରଲାଲ ଗାନ୍ଧିଜୀଙ୍କ ପ୍ରଧାନ ଶିଷ୍ୟ । ଏହି ସବୁ କାରଣରୁ ପୃଥିବୀର ସବୁ ଦେଶରେ ସେ ସମ୍ମାନିତ ହୋଇଥିଲେ ।

ନେହେରୁ ପରିବାର କାଶ୍ମୀରୀ ବ୍ରାହ୍ମଣ । ପଣ୍ଡିତ ଜବାହରଲାଲଙ୍କ ପୂର୍ବପୁରୁଷମାନେ କାଶ୍ମୀରରେ ବାସ କରୁଥିଲେ । ସେହି ବଂଶର ପଣ୍ଡିତ କାଉଲ ନାମକ ଜଣେ ବ୍ୟକ୍ତି ମୋଗଲ ସାମ୍ରାଜ୍ୟର ଶେଷ ଭାଗକୁ ଦିଲ୍ଲୀରେ ଆସି ରହିଲେ । ଦିଲ୍ଲୀର ସମ୍ରାଟ୍ ଫରୁକସିଆର ତାଙ୍କୁ ଘର ବାଡ଼ି ଓ ଜାଗିର ଦେଇ ରଖିଲେ । ଏହି ଜାଗିର ଗୋଟାଏ ନାଳ କୂଳରେ ଥିଲା । ନାଳକୁ ନହର କୁହାଯାଏ । ଏହି ନହର ଶବ୍ଦରୁ କାଉଲ ବଂଶର ପଦବୀ କାଳକ୍ରମେ ନେହେରୁ ହୋଇଗଲା ।

୧୮୮୯ ସାଲ୍ ନଭେମ୍ବର ମାସ ୧୪ ତାରିଖ ଦିନ ଏଲ୍ହାବାଦ ନଗରରେ ଜବାହରଲାଲ ଜନ୍ମ ଗ୍ରହଣ କରିଥିଲେ । ଖୁବ୍ ବଡ଼ଲୋକ ଘରେ ତାଙ୍କର ଜନ୍ମ । ଆଦର, ଯତ୍ନ ଓ ବିଳାସ



ଭିତରେ ସେ ବଢ଼ିଲେ । ତାଙ୍କ ପିତାଙ୍କ ନାମ ପଣ୍ଡିତ ମୋତିଲାଲ ନେହେରୁ । ସେ ବିଖ୍ୟାତ ଆଇନ ବ୍ୟବସାୟୀ ଥିଲେ ।

ପିଲାଦିନୁ ଜବାହରଲାଲ ପିତାଙ୍କୁ ଭକ୍ତି କରୁଥିଲେ । ପଣ୍ଡିତ ମୋତିଲାଲ ମଧ୍ୟ ଆଦର୍ଶ ପିତା ଥିଲେ । ଏକମାତ୍ର ପୁଅ ଜବାହରଲାଲଙ୍କୁ ସେ ଜୀବନ ଅପେକ୍ଷା ବେଶି ଭଲ ପାଉଥିଲେ; କିନ୍ତୁ

ଦରକାରବେଳେ ଶାସନ କରିବାରେ ମଧ୍ୟ ସେ କୁଣ୍ଠିତ ହେଉ ନ ଥିଲେ । ଜବାହାରଲାଲଙ୍କ ମାଆଙ୍କ ନାମ ନାମ ସ୍ୱରୂପରାଣୀ ।

ମୋତିଲାଲ ଏଲାହାବାଦ ସହରରେ ଆନନ୍ଦଭବନ ନାମରେ ଗୋଟିଏ ବିରାଟ ପ୍ରାସାଦ ତିଆରି କରିଥିଲେ । ପରବର୍ତ୍ତୀ କାଳରେ ଏହା ଜାତୀୟ ଆନ୍ଦୋଳନର ପ୍ରଧାନ କେନ୍ଦ୍ରରେ ପରିଣତ ହୋଇଥିଲା ।

ପିଲାଦିନେ ଜବାହାରଲାଲ କୌଣସି ସ୍କୁଲରେ ପଢି ନଥିଲେ । ପ୍ରଥମେ ତାଙ୍କୁ ଜଣେ ଇଂରେଜ ଶିକ୍ଷୟିତ୍ରୀ ପଢ଼ାଉଥିଲେ । ତତ୍ପରେ ଜଣେ ଇଉରୋପୀୟ ଗୃହଶିକ୍ଷକ ତାଙ୍କୁ ଲେଖାପଢ଼ା ଓ ଇଂରେଜ ଧରଣର ଆଚାର ବ୍ୟବହାର ଶିଖାଇଲେ । ଜଣେ ବୟସ୍କ ପଣ୍ଡିତ ତାଙ୍କୁ ହିନ୍ଦି ଓ ସଂସ୍କୃତ ପଢ଼ାଇବା ପାଇଁ ନିଯୁକ୍ତ ହୋଇଥିଲେ ।

ପୁଅକୁ ପୁରାପୁରି ବିଲାତି ସାହେବ କରି ତିଆରି କରିବା ପଣ୍ଡିତ ମୋତିଲାଲଙ୍କର ଉଦ୍ଦେଶ୍ୟ ଥିଲା । ସେଥିପାଇଁ ସେ ପୁଅକୁ ରଜାପିଲା ପରି ବଢ଼ାଇଥିଲେ ।

ଜବାହାରଲାଲଙ୍କୁ ୧୫ ବର୍ଷ ବୟସ । ପାଠ ପଢ଼ିବା ପାଇଁ ୧୯୦୫ ସାଲ ମଇ ମାସରେ ସେ ବିଲାତ ଗଲେ । ଇଂଲଣ୍ଡର ସବୁଠାରୁ ବଡ଼ ସ୍କୁଲରେ ପୁଅର ନାମ ଲେଖାଇବା ପାଇଁ ପରିବାରର ଲୋକଙ୍କ ସହିତ ମୋତିଲାଲ ମଧ୍ୟ ତାଙ୍କ ସହିତ ଯାଇଥିଲେ । ସେତେବେଳେ ତାଙ୍କ ଭଉଣୀ ବିଜୟଲକ୍ଷ୍ମୀ ସାନ ପିଲା ।

ଲଣ୍ଡନରେ ହାରୋ ସ୍କୁଲରେ ଜବାହାରଲାଲଙ୍କ ନାମ ଲେଖାଗଲା । ଏ ସ୍କୁଲରେ କେବଳ ବଡ଼ ବଡ଼ ଲୋକଙ୍କ ପିଲା ପାଠ ପଢ଼ନ୍ତି । ଜବାହରଲାଲ ପିଲାଦିନୁଁ ଅତି ମେଧାବୀ ଓ ବୁଦ୍ଧିମାନ୍, ତେଣୁ

ହାରୋସ୍କୁଲର ଶିକ୍ଷକମାନେ ତାଙ୍କୁ ଯୁଖ ପାଉଥିଲେ । ସେମାନେ ପାର୍ଲିଆମେଣ୍ଟ ନିର୍ବାଚନ ବିଷୟରେ ସବୁ କଥା ଚର୍ଚ୍ଚା କରୁଥିଲେ । ପିଲାଦିନୁ ଜବାହରଲାଲ ଏ ସବୁ ବିଷୟରେ କିଛି କିଛି ଜାଣିପାରିଥିଲେ ।

ହାରୋସ୍କୁଲରେ ଶିକ୍ଷା ସମାପ୍ତ ହେବାପରେ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଟ୍ରିନିଟି କଲେଜରେ ଯୋଗଦେଲେ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଏହି ସମୟରେ ଭାରତୀୟ ମଜ୍‌ଲିସ୍ ନାମକ ଗୋଟିଏ ସମିତି ଥିଲା । ଏଠାରେ ରାଜନୀତି ଚର୍ଚ୍ଚା କରାଯାଉଥିଲା । ବିଲାତ ପାର୍ଲିଆମେଣ୍ଟରେ ସଭ୍ୟମାନେ ଯେଉଁ ଧରଣରେ ବକ୍ତୃତା ଦିଅନ୍ତି, ତାହା ଅଭ୍ୟାସ କରିବା ମଜଲିସ୍‌ର ସଭ୍ୟମାନଙ୍କର ଗୋଟିଏ କାମ ଥିଲା । ସବୁ ସଭ୍ୟଙ୍କୁ ବକ୍ତୃତା ଦେବାକୁ ପଡ଼ୁଥିଲା । ବକ୍ତୃତା ଦେଇ ନ ପାରିଲେ ଜରିମାନା ଦେବାକୁ ପଡ଼ୁଥିଲା । ଜବହାରଲାଲ-ଙ୍କର ବକ୍ତୃତା ଦେବା କ୍ଷମତା ଆଦୌ ନ ଥିଲା । ସେଥିପାଇଁ ତାଙ୍କୁ ଅନେକ ଥର ଜରିମାନା ଦେବାକୁ ପଡ଼ୁଥିଲା ।

୧୯୧୦ ସାଲରେ ଜବାହାରଲାଲ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଲେ । ଆଇ: ସି: ଏସ୍: ପରୀକ୍ଷା ଦେବାପାଇଁ ତାଙ୍କର ଇଚ୍ଛା ଥିଲା, କିନ୍ତୁ ମୋତିଲାଲ ସେଥିରେ ରାଜି ନ ହେବାରୁ ସେ ବାରିଷ୍ଟରୀ ପଢ଼ିଲେ । ୨୩ ବର୍ଷ ବୟସରେ ଜବାହାରଲାଲ ବାରିଷ୍ଟରୀ ପାସ କରି ଭାରତକୁ ଫେରିଲେ ।

ପିତାଙ୍କ ସହିତ ଜବହାରଲାଲ ଆଇନ ବ୍ୟବସାୟରେ ଯୋଗଦାନ କଲେ; କିନ୍ତୁ ଏ କାମ ତାଙ୍କୁ ଭଲ ଲାଗିଲା ନାହିଁ ।

ଏହିପରି ଭାବରେ ଦୁଇ ବର୍ଷ କଟିଗଲା । ଇତି ମଧ୍ୟରେ ସମୟ ସମୟରେ ସେ କଂଗ୍ରେସର ଗୋଟିଏ ଦୁଇଟି ସଭାସମିତିରେ

ଯୋଗଦେଇଥିଲେ । କିନ୍ତୁ ପିଲାଦିନୁ ସେ ବିଦେଶୀଭାବରେ ଜଆର ହୋଇଥିଲେ, ତେଣୁ ଦେଶଲୋକଙ୍କ କଥା ତାଙ୍କ ମନରେ ପ୍ରଭାବ ପକାଇ ପାରୁ ନ ଥିଲା ।

୧୯୧୪ରେ ପ୍ରଥମ ମହାଯୁଦ୍ଧ ଆରମ୍ଭ ହେଲା । ସଭା-ସମିତିରେ ବକ୍ତୃତା ଓ ଖବରକାଗଜ ଲେଖାରେ ବ୍ରିଟିଶ୍ ବିରୋଧୀ କଥା ବନ୍ଦ କରିବା ପାଇଁ ଇଂରେଜ ସରକାର ଭାରତ ରକ୍ଷା ଆଇନ ନାମରେ ଗୋଟିଏ ଆଇନ ଚଳାଇଲେ । ଏହା ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ ଏଲାହାବାଦଠାରେ ଗୋଟିଏ ସଭା ହେଲା । ସେତେବେଳେ ସାର୍ ତେଜ୍ ବାହାଦୁର ସାପ୍ରୁ ସେଠାର ବାରିଷ୍ଟର ଥିଲେ । ମୋତିଲାଲ ନେହେରୁଙ୍କ ସହିତ ତାଙ୍କର ବିଶେଷ ବନ୍ଧୁତା ଥିଲା । ସଭାରେ ବକ୍ତୃତା ଦେବାପାଇଁ ସେ ଜବାହାରଲାଲଙ୍କୁ ପ୍ରବର୍ତ୍ତାଇଲେ । ଜବାହାରଲାଲ ହିନ୍ଦିରେ କହିବେ ବୋଲି ଉଠି କିଛି କହିପାରିଲେ ନାହିଁ, ଇଂରେଜୀରେ ପଦେ ଦିପଦ କହି ବସିପଡ଼ିଲେ । ଏହାହିଁ ତାଙ୍କ ଜୀବନର ପ୍ରଥମ ବକ୍ତୃତା ।

୧୯୧୬ ସାଲରେ ଲକ୍ଷ୍ନୌଠାରେ କଂଗ୍ରେସ ଅଧିବେଶନ ହେଲା । ଜବାହାରଲାଲ ସେଠାରେ ଗାନ୍ଧିଜୀଙ୍କୁ ଦେଖିବା ଓ ତାଙ୍କ କଥା ଶୁଣିବାର ପ୍ରଥମ ସୁଯୋଗ ପାଇଥିଲେ । ଏହା ଫଳରେ ତାଙ୍କ ମନରେ ଗୋଟାଏ ବଡ଼ ବିପ୍ଳବ ସୃଷ୍ଟି ହୋଇଗଲା । ୧୯୧୬ ରେ ଶ୍ରୀମତୀ କମଳାଙ୍କ ସହିତ ତାଙ୍କର ବିବାହ ହୋଇଥିଲା ।

ମୋତିଲାଲଙ୍କ ଘରେ ରାଜନୀତି ବିଷୟରେ ବରାବର ନାନା ଆଲୋଚନା ହୁଏ । ଜବାହରଲାଲ ସବୁ ଶୁଣନ୍ତି; କିନ୍ତୁ ଏ ସବୁ ବିଷୟ ତାଙ୍କ ମନରେ ସ୍ଥାନ ପାଉ ନ ଥିଲା । ୧୯୧୮ରେ ଗାନ୍ଧି

ରାଓଲେଟ୍ ଆଇନ ବିରୁଦ୍ଧରେ ପ୍ରତିବାଦ କରି ହରତାଳ କରିବା ପାଇଁ ଭାରତବାସୀଙ୍କୁ ଡାକରା ଦେଇଥିଲେ । ପଞ୍ଜାବରେ ଜାଲିଆନା ଓ୍ୱାଲାବାଗ୍‌ରେ ହତ୍ୟାକାଣ୍ଡ ଘଟିଲା । ଏ ବିଷୟରେ ଅନୁସନ୍ଧାନ କରିବା ପାଇଁ କଂଗ୍ରେସ ଗୋଟିଏ ତଦନ୍ତ କମିଟି ବସାଇଲା । ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ସହକର୍ମୀ ଭାବରେ ଜବାହରଲାଲ ସମୁଦାୟ ଅତ୍ୟାଚାର କାହାଣୀ ଜାଣିପାରିଲେ । ତାଙ୍କ ମନ ଭିତରେ ବିଦ୍ରୋହ ନିଆଁ ଜଳିଉଠିଲା ।

୧୯୨୦ରେ ଆଉ ଗୋଟିଏ ଘଟଣା ଘଟିଲା । ମସୌରୀରେ ଗୋଟିଏ ବଡ଼ ହୋଟେଲରେ ଜବାହାରଲାଲ ରହିଥିଲେ । ସେଠାରେ ଆଫଗାନ ପ୍ରତିନିଧିମାନେ ମଧ୍ୟ ଥିଲେ । ଜବାହରଲାଲଙ୍କ ସହିତ ତାଙ୍କର ଦେଖାହେବ ନାହିଁ ଓ ତାଙ୍କୁ ହୋଟେଲ ଛାଡ଼ି ଚାଲିଯିବାକୁ ହେବ ବୋଲି ତାଙ୍କ ଉପରେ ସରକାର ପକ୍ଷରୁ ହୁକୁମ ଜାରି ହେଲା । ସେ ଏଲାହାବାଦ ଫେରି ଆସିଲେ । ମୋତିଲାଲ ସବୁ ଶୁଣିଲେ । ଯୁକ୍ତପ୍ରଦେଶ ଲାଟଙ୍କ ସହିତ ତାଙ୍କର ବେଶ୍ ବନ୍ଧୁତା ଥିଲା । ଏ ହୁକୁମ ଫେରାଇ ନେବାପାଇଁ ମୋତିଲାଲ ତାଙ୍କୁ ଲେଖିଲେ । କିଛି ଦିନ ପରେ ତାହା ଫେରାଇ ନିଆଗଲା; କିନ୍ତୁ ସରକାରଙ୍କର ଅନ୍ୟାୟ ଓ ଅତ୍ୟାଚାରର ପ୍ରତ୍ୟକ୍ଷ ପରିଚୟ ପାଇ ଜବାହାରଲାଲଙ୍କ ମନରେ ଇଂରେଜ ରାଜତ୍ୱ ବିଷୟରେ ଧାରଣା ବଦଳିଗଲା ।

୧୯୨୧ରେ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଜବାହାରଲାଲ ଏ ଆନ୍ଦୋଳନରେ ଯୋଗଦେଲେ । ତାଙ୍କ ଜୀବନର ସମସ୍ତ ଆଶା ଓ ବିଶ୍ୱାସ ଏହି ଜାତୀୟ ସଂଗ୍ରାମରେ ମିଶିଗଲା । ଏହି ସମୟରେ ବକ୍ତା ହିସାବରେ ତାଙ୍କର ପ୍ରତିଭା ଦେଖାଯାଇଥିଲା

ସେ ବର୍ଷ ବ୍ରିଟିଶ ଯୁବରାଜ ଭାରତକୁ ଆସିଥିଲେ । କଂଗ୍ରେସ ତାଙ୍କର ଅଭ୍ୟର୍ଥନା ବର୍ଜନ କରିବାପାଇଁ ସ୍ଥିର କଲା । ସାରା ଭାରତରେ ସ୍ୱେଚ୍ଛାସେବକବାହିନୀ ଗଠିତ ହେଲା । ଯୁକ୍ତପ୍ରଦେଶର ସ୍ୱେଚ୍ଛାସେବକ ତାଲିକାରେ ପ୍ରଥମେ ପଣ୍ଡିତ ମୋତିଲାଲ ନାମ ଲେଖାଇଥିଲେ । ଦ୍ୱିତୀୟ ସ୍ୱେଚ୍ଛାସେବକ ଥିଲେ ଜବାହରଲାଲ । ସ୍ୱେଚ୍ଛାସେବକବାହିନୀକୁ ଠାଣୁଆ କରି ଗଢ଼ିବା କାମରେ ସେ ଲାଗି ପଡ଼ିଲେ । ବ୍ରିଟିଶ ଯୁବରାଜ ଭାରତରେ ଯେଉଁ ଯେଉଁ ସହରକୁ ଗଲେ ସେଠାରେ ପୂର୍ଣ୍ଣ ହରତାଳ ପାଳିତ ହୋଇଥିଲା । ଏହା ଫଳରେ ବ୍ରିଟିଶ ସରକାର ବିଚଳିତ ହୋଇ ସ୍ୱେଚ୍ଛାସେବକ-ବାହିନୀକୁ ବେଆଇନ ଘୋଷଣା କଲେ । ଶହ ଶହ ଲୋକଙ୍କୁ ଧରି ଜେଲ ଦିଆଗଲା । ଦିନେ ଜବାହରଲାଲ ଅଫିସରେ ବସି କାମ କରୁଛନ୍ତି, ଏହି ସମୟରେ ତାଙ୍କୁ ଗିରଫ କରାଗଲା । ତାଙ୍କ ପିତା ପଣ୍ଡିତ ମୋତିଲାଲ ମଧ୍ୟ ଗିରଫ ହୋଇଥିଲେ । ଦୁହିଁଙ୍କୁ ଲକ୍ଷ୍ନୌ ଜେଲରେ ରଖାଗଲା । ଏହାହିଁ ଜବାହରଲାଲ ନେହେରୁଙ୍କ ପ୍ରଥମ ଜେଲ ଜୀବନ ।

୧୯୨୩ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମାସ ୨୩ ତାରିଖ ଦିନ ଜବାହରଲାଲଙ୍କୁ ଜେଲରୁ ମୁକ୍ତି ଦିଆଗଲା । ସେ ଯୁକ୍ତପ୍ରଦେଶ କଂଗ୍ରେସ କମିଟିର ସମ୍ପାଦକ ଥିଲେ । ଏହି ସମୟରେ ସେ ଏଲାହାବାଦ ମ୍ୟୁନିସିପାଲିଟିର ସଭାପତିରୂପେ ନିର୍ବାଚିତ ହୋଇଥିଲେ ।

୧୯୨୩ ସାଲ ଡିସେମ୍ବର ମାସରେ କୋକନଡାଠାରେ କଂଗ୍ରେସର ବୈଠକ ବସିଥିଲା । ସେଥିରେ ଜବାହରଲାଲ ସାଧାରଣ ସମ୍ପାଦକ ନିର୍ବାଚିତ ହେଲେ । ସେହି ସମୟରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ କଂଗ୍ରେସର ସମ୍ପାଦକ, ସଭାପତି ବା କାର୍ଯ୍ୟକାରୀ

କମିଟିର ସଭ୍ୟ ରହି କଂଗ୍ରେସ କାର୍ଯ୍ୟ ପରିଚାଳନା ଦାୟିତ୍ୱରେ ରହିଥିଲେ । ସେ ଦୁଇଥର କଂଗ୍ରେସ ସଭାପତିରୂପେ ନିର୍ବାଚିତ ହୋଇଥିଲେ ।

୧୯୨୪ ସାଲ ଜାନୁୟାରି ମାସରେ ଏଲାହାବାଦଠାରେ କୁମ୍ଭମେଳା ହୋଇଥିଲା । ଗଙ୍ଗା, ଯମୁନା ସଙ୍ଗମସ୍ଥାନରେ କେହି ଗାଧୋଇ ପାରିବେ ନାହିଁ ବୋଲି ସରକାର ହୁକୁମ ଜାରି କଲେ । ପଣ୍ଡିତ ମଦନମୋହନ ମାଲବ୍ୟ ଭାରତର ଜଣେ ବଡ଼ ନେତା ଥିଲେ । ଏ ହୁକୁମ ଉଠାଇ ଦେବାପାଇଁ ସେ ଯୁକ୍ତପ୍ରଦେଶର ସରକାରଙ୍କ ପାଖକୁ ଚିଠି ଲେଖିଲେ । ସେଥିରେ କିଛି ଫଳ ହେଲାନାହିଁ । ପଣ୍ଡିତ ମାଲବ୍ୟ ନିଜେ ସତ୍ୟାଗ୍ରହ କରି ଏ ଅନ୍ୟାୟ ହୁକୁମ ଅମାନ୍ୟ କରିବାକୁ ସ୍ଥିର କଲେ । ପଣ୍ଡିତ ଜବାହରଲାଲ ମଧ୍ୟ ପଣ୍ଡିତ ମାଲବ୍ୟଙ୍କ ସହିତ ମିଶି ସତ୍ୟାଗ୍ରହ କଲେ । ଦୁଇଶହ ଜଣ ସହଯାତ୍ରୀଙ୍କୁ ନେଇ ତାରବାଡ଼ ଡେଇଁ ସେମାନେ ତୀର୍ଥସ୍ଥାନରେ ସ୍ନାନ କରିଥିଲେ; ମାତ୍ର ଏଥର ସରକାର ସେମାନଙ୍କ ବିରୁଦ୍ଧରେ କିଛି ବ୍ୟବସ୍ଥା ନ କରି ଚୁପ ହୋଇ ରହିଗଲେ ।

୧୯୨୫ ସାଲରେ ଜବାହରଲାଲଙ୍କ ପତ୍ନୀ ଶ୍ରୀମତୀ କମଳା ନେହରୁ ବିଶେଷ ଅସୁସ୍ଥ ହୋଇପଡ଼ିବାରୁ ଡାକ୍ତରମାନଙ୍କ ପରାମର୍ଶରେ ଜବାହରଲାଲ ତାଙ୍କୁ ନେଇ ଇଉରୋପ ଯାତ୍ରା କଲେ । ସୁଇଜରଲଣ୍ଡ୍‌ରେ କିଛି ଦିନ ରହିବା ଫଳରୁ କମଳା ଟିକିଏ ସୁସ୍ଥ ହେଲେ । ସେତେବେଳେ ଜବାହରଲାଲ ଫ୍ରାନ୍‌ସ, ଇଂଲଣ୍ଡ, ଜର୍ମାନୀ ପ୍ରଭୃତି ଇଉରୋପର ନାନା ଦେଶ ବୁଲି ଦେଖିଥିଲେ । ୧୯୨୭ରେ ବେଲ୍‌ଜିଅମ୍ ଦେଶର ରାଜଧାନୀ ବ୍ରୁସେଲସ୍‌ଠାରେ ସମଗ୍ର ପୃଥିବୀରେ ନିର୍ବାଚିତ ଶ୍ରେଷ୍ଠ ଲୋକମାନଙ୍କର ଗୋଟିଏ

ସମ୍ମିଳମୀ ହୋଇଥିଲା । ସେଥିରେ ଜବାହରଲାଲ ଜାଣିଥିଲେ କଂଗ୍ରେସର ପ୍ରତିନିଧି ରୂପେ ଯୋଗ ଦେଇଥିଲେ । ସେହି ବର୍ଷ ସେ ରୁଷିଆ ରାଜଧାନୀ ମସ୍କୋଠାକୁ ମଧ୍ୟ ଯାଇଥିଲେ ।

ଇଉରୋପରୁ ଫେରି ସେ ମାନ୍ଦ୍ରାଜ କଂଗ୍ରେସରେ ଯୋଗ-ଦେଇଥିଲେ । ସେହିଠାରେ ପ୍ରଥମେ ସେ ଭାରତର ପୂର୍ଣ୍ଣ ସ୍ୱାଧୀନତା ଦାବୀ ଆଗତ କରିଥିଲେ । ଏହି ମାନ୍ଦ୍ରାଜ କଂଗ୍ରେସରେ ଭାରତ ପାଇଁ ଗୋଟିଏ ଶାସନ ଖସଡ଼ା ତିଆରି କରିବାପାଇଁ ପଣ୍ଡିତ ମୋତିଲାଲଙ୍କ ସଭାପତିତ୍ୱରେ ଗୋଟିଏ କମିଟି ଗଢ଼ା ହୋଇଥିଲା । ଜବାହରଲାଲ ସେଥିରେ ସମ୍ପାଦକ ନିଯୁକ୍ତ ହୋଇଥିଲେ । ଏମାନେ ସର୍ବଦଳ ସମ୍ମିଳନୀ ଡକାଇ ଔପନିବେଶିକ ଖସଡ଼ା ତିଆରି କରିଥିଲେ । ୧୯୨୯ ସାଲ ଡିସେମ୍ବର ମାସ ୨୫ ତାରିଖ ମଧ୍ୟରେ ସରକାର ଏହାକୁ ଗ୍ରହଣ କରନ୍ତୁ ବୋଲି କଂଗ୍ରେସ ପକ୍ଷରୁ ଦାବୀ ହୋଇଥିଲା । ଏ ବିଷୟ ଆଲୋଚନା କରିବାପାଇଁ ମହାତ୍ମା ଗାନ୍ଧି, ପଣ୍ଡିତ ମୋତିଲାଲ ପ୍ରମୁଖ ବଡ଼ ବଡ଼ ନେତାମାନେ ୧୯୨୯ରେ ବଡ଼ଲାଟ ଲର୍ଡ ଇରୱିନଙ୍କ ସହିତ ଦେଖା କରିଥିଲେ; କିନ୍ତୁ ଇଂରେଜ ସରକାର ଏ ଦାବୀ ମାନିଲେ ନାହିଁ । ୧୯୧୯ରେ ଲାହୋରଠାରେ କଂଗ୍ରେସ ଅଧିବେଶନ ହେଲା । ଜବାହରଲାଲ ଏହାର ସଭାପତି ହୋଇଥିଲେ । ସେହି ବର୍ଷ କଂଗ୍ରେସରେ ଭାରତ ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦାବୀ ଗୃହୀତ ହୋଇଥିଲା ।

ସ୍ୱାଧୀନତା ପ୍ରସ୍ତାବ ଗୃହୀତ ହୋଇଯିବା ପରେ ଜାନୁୟାରୀ ମାସ ୨୬ ତାରିଖରେ ସ୍ୱାଧୀନତା ଦିବସ ପାଳନ କରାଯିବ ବୋଲି ସ୍ଥିର ହୋଇଥିଲା । ଭାରତର ଲୋକେ ସେଦିନ ସଭାସମିତିରେ ଏକାଠି ହୋଇ ସ୍ୱାଧୀନତା ଶପଥ ଗ୍ରହଣ କରିଥିଲେ । ଆଜି ମଧ୍ୟ ଏହି ଜାନୁୟାରୀ ୨୬ ତାରିଖ ସ୍ୱାଧୀନତା ଦିବସରୂପେ ସାରା ଭାରତରେ ପାଳିତ ହେଉଛି ।

୧୯୩୦ ଏପ୍ରିଲ ମାସରେ ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଭାରତର ଚାରିଆଡ଼େ ଲାଠିମାଡ଼ ଚାଲିଲା, ହଜାର ହଜାର ଲୋକଙ୍କୁ ବନ୍ଦୀ କରାଗଲା । ଜବାହରଲାଲଙ୍କୁ ଏଲାହାବାଦ ଷ୍ଟେସନରେ ଗିରଫ କରାଯାଇ ୬ ମାସ ଜେଲ ଦିଆଗଲା । କିଛିଦିନ ମଧ୍ୟରେ ତାଙ୍କର ବାପା ମା, ଦୁଇ ଭଉଣୀ ଓ ସ୍ତ୍ରୀ ଜେଲ ଗଲେ । ତାଙ୍କର ବୁଢ଼ୀ ଶାଶୁ ମଧ୍ୟ ଏହି ସମୟରେ ସତ୍ୟାଗ୍ରହ କରି ଜେଲ ଯାଇଥିଲେ । ପଣ୍ଡିତ ମୋତିଲାଲ କେତେ ମାସ ଜେଲ ଭୋଗିବା ପରେ ଅସୁସ୍ଥ ହେବାରୁ ତାଙ୍କୁ ଖଲାସ କରିଦିଆଗଲା । ୧୯୩୧ ସାଲ ଫେବୃୟାରୀ ମାସ ୬ ତାରିଖ ଦିନ ପଣ୍ଡିତ ମୋତିଲାଲ ସ୍ୱର୍ଗାରୋହଣ କଲେ । ଏ ଘଟଣାରେ ଜବାହରଲାଲ ବଡ଼ ଚିନ୍ତିତ ହୋଇ ପଡ଼ିଥିଲେ ।

ଏ ବର୍ଷ ପ୍ରଥମ ଗୋଲଟେବୁଲ ବୈଠକ ଶେଷ ହେଲା । ଗାନ୍ଧି-ଇରୱିନ ଚୁକ୍ତି ଫଳରେ ଲବଣ ସତ୍ୟାଗ୍ରହ ବନ୍ଦ କରାଗଲା । ସେ ବର୍ଷ କରାଚୀଠାରେ କଂଗ୍ରେସ ଅଧିବେଶନ ହୋଇଥିଲା । ସେଥିରେ ମୌଳିକ ଅଧିକାର ପ୍ରସ୍ତାବ ଗୃହୀତ ହୋଇଥିଲା ।

କଂଗ୍ରେସର କରାଚୀ ବୈଠକ ପରେ ଗାନ୍ଧିଜୀ, ଶ୍ରୀମତୀ ସରୋଜିନୀ ନାଇଡ଼ୁ ଓ ପଣ୍ଡିତ ମଦନମୋହନ ମାଲବ୍ୟ ବିଲାତର ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗ ଦେଇଥିଲେ । ବ୍ରିଟିଶ ସରକାରଙ୍କ କୂଟନୀତି ଫଳରେ ସେମାନେ ଖାଲି ହାତରେ ଦେଶକୁ ଫେରି ଆସିଥିଲେ ।

ତା'ପରେ ପୁଣି ଦମନ ଲୀଳା ଆରମ୍ଭ ହୋଇଥିଲା । ଏଥର ଜବାହରଲାଲଙ୍କୁ ଦୁଇବର୍ଷ ସଶ୍ରମ କାରାଦଣ୍ଡ ଓ ୫୦୦ ଟଙ୍କା ଜରିମାନା ଦଣ୍ଡ ହୋଇଥିଲା ।

୧୯୩୩ ଅଗଷ୍ଟ ମାସରେ ତାଙ୍କୁ ମୁକ୍ତି ଦିଆଗଲା । ୧୯୩୪ରେ କଲିକତାରେ ରାଜଦ୍ରୋହମୂଳକ ବକ୍ତୃତା ଦେବା ଅଭିଯୋଗରେ ତାଙ୍କୁ ପୁଣି ଦୁଇବର୍ଷ ଜେଲଦଣ୍ଡ ହେଲା । ଇତିମଧ୍ୟରେ ତାଙ୍କର ସହଧର୍ମିଣୀ ଶ୍ରୀମତୀ କମଳା ଅସୁସ୍ଥ ହେବାରୁ ଚିକିତ୍ସା ପାଇଁ ତାଙ୍କୁ ଜର୍ମାନୀକୁ ନେବାକୁ ପଡ଼ିଲା । ସେଠାରେ ମଧ୍ୟ ଆରୋଗ୍ୟର ଲକ୍ଷଣ ଦେଖା ନ ଦିବାରୁ ଜବାହରଲାଲ ଜେଲରୁ ମୁକ୍ତି ଦିଆଗଲା । ସେଠାରେ ଶ୍ରୀମତୀ କମଳା ନେହେରୁ ୧୯୩୬ ସାଲ ଫେବ୍ରୁୟାରୀ ମାସ ୨୮ ତାରିଖରେ ପ୍ରାଣତ୍ୟାଗ କରିଗଲେ । ସ୍ତ୍ରୀଙ୍କର ଶେଷକୃତ୍ୟ ସମାପନ କରି ଜବାହରଲାଲ ଭାରତକୁ ଫେରି ସ୍ୱାଧୀନତା ଆନ୍ଦୋଳନ ଭିତରେ ନିଜକୁ ବୁଡ଼ାଇଦେଇଥିଲେ । ଏହି ବର୍ଷ ଲକ୍ଷ୍ନୌ କଂଗ୍ରେସ ଅଧିବେଶନରେ ତାଙ୍କୁ ସଭାପତି କରାଯାଇଥିଲା । ପର ବର୍ଷ ଫୈଜପୁରଠାରେ କଂଗ୍ରେସ ଅଧିବେଶନ ବସିଲା । ସେଥିରେ ମଧ୍ୟ ଜବାହରଲାଲ ସଭାପତି ନିର୍ବାଚିତ ହୋଇଥିଲେ । ସେତେବେଳେ ଇଂରେଜ ସରକାର ଭାରତରେ ନୂଆ ଶାସନ ସଂସ୍କାର ଆଇନ ଚଳାଇଥିଲେ । ଏ ଆଇନ ଅନୁସାରେ କଂଗ୍ରେସ ଲୋକେ ପ୍ରାଦେଶିକ ଶାସନର ଦାୟିତ୍ୱ ଗ୍ରହଣ କରିଥିଲେ ।

୧୯୩୭ ସାଲରେ କଂଗ୍ରେସ ପ୍ରାଦେଶିକ ବ୍ୟବସ୍ଥାସଭାମାନଙ୍କ ନିମନ୍ତେ ପ୍ରାର୍ଥୀ ଠିଆକରିବା ପାଇଁ ସ୍ଥିର କରିଥିଲେ । ଜବାହରଲାଲ ନିର୍ବାଚନ ପ୍ରଚାର କାମରେ ଲାଗିଲେ । ଏ ସମ୍ପର୍କରେ ସେ ହିମାଳୟଠାରୁ କୁମାରିକା ଓ କ୍ୱେଟାଠାରୁ ଗୌହାଟୀ ପର୍ଯ୍ୟନ୍ତ ଭ୍ରମଣ କରି ଶହ ଶହ ସଭାରେ ବକ୍ତୃତା ଦେଇଥିଲେ । ଏହି ସମୟରେ ସେ ପ୍ରଥମଥର ଓଡ଼ିଶାକୁ ଆସି ଦୁଇ ଦିନ ମଧ୍ୟରେ କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲାରେ ୯୦ଟିରୁ ଅଧିକ ସଭାରେ ବକ୍ତୃତା ଦେଇଥିଲେ ।

୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଲାଗିଲା । କଂଗ୍ରେସର ନିର୍ଦ୍ଦେଶ ଅନୁସାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇ ସବୁ କାମ

ଛାଡ଼ିଦେଲେ । ଜବାହରଲାଲ ବ୍ୟକ୍ତିଗତ ସତ୍ୟାଗ୍ରହରେ ଯୋଗ-ଦେଇ ଜେଲ ବରଣ କରିଥିଲେ । ଏଥର ତାଙ୍କୁ ଚାରି ବର୍ଷ ଜେଲ ଦଣ୍ଡ ହୋଇଥିଲା । କିନ୍ତୁ ୧୯୪୨ ଜାନୁୟାରୀ ମାସରେ ମହାତ୍ମାଗାନ୍ଧି ବ୍ୟକ୍ତିଗତ ସତ୍ୟାଗ୍ରହ ବନ୍ଦ କରିଦେଲେ । ତତ୍ପରେ ତାଙ୍କୁ ଛାଡ଼ି ଦିଆଯାଇଥିଲା ।

୧୯୪୨ରେ ପୂର୍ବଆଡ଼ୁ ଜାପାନୀମାନେ ମାଡ଼ି ଆସିଥିଲେ । ଭାରତ ସହିତ ମିଳାମିଶା କରିବା ପାଇଁ ଇଂରେଜ ସରକାର ସାର୍ ଷ୍ଟାଫୋର୍ଡ କ୍ରିପ୍‌ସଙ୍କୁ ପଠାଇଥିଲେ । କଂଗ୍ରେସ ପକ୍ଷରୁ ଜବାହରଲାଲ ଓ ମୌଲାନା ଆଜାଦ ତାଙ୍କ ସହିତ ଆଲୋଚନା କରି ବିଫଳ ହୋଇ ଫେରିଲେ ।

୧୯୪୨ ଅଗଷ୍ଟମାସ ୮ ତାରିଖ ଦିନ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନରେ ଭାରତ ଛାଡ଼ ପ୍ରସ୍ତାବ ଗୃହୀତ ହୋଇଥିଲା । ପରଦିନ ସକାଳୁ ଇଂରେଜ ସରକାର ସବୁ ବଡ଼ ବଡ଼ କଂଗ୍ରେସ ନେତାଙ୍କ ସହିତ ଜବାହାରଲାଲଙ୍କୁ ବନ୍ଦୀ କଲେ । ଏ ଥରକୁ ମିଶାଇ ତାଙ୍କୁ ଇଂରେଜ ସରକାର ନଅଥର ବନ୍ଦୀ କରିଥିଲେ । ୧୯୪୫ରେ ପୁଣି ଥରେ ଇଂରେଜ ସରକାର ଭାରତ ସହିତ ମିଳାମିଶାର ଆୟୋଜନ କଲେ । ୧୯୪୫ରେ ତାଙ୍କୁ ମୁକ୍ତି ଦିଆଗଲା । ନାନା ଆଲୋଚନା ପରେ କେନ୍ଦ୍ରର ଜାତୀୟ ସରକାର ପ୍ରତିଷ୍ଠା କରିବା ପ୍ରସ୍ତାବରେ କଂଗ୍ରେସ ରାଜି ହେଲା ଓ ଜବାହରଲାଲ ଅସ୍ଥାୟୀ ସରକାରରେ ଯୋଗ ଦେଇଥିଲେ । ସେହିଦିନୁ ମୃତ୍ୟୁ ପର୍ଯ୍ୟନ୍ତ ସେ କେନ୍ଦ୍ର ସରକାରରେ ରହି ସୁଚାରୁରୂପେ ଦେଶ ଚଳାଉଥିଲେ ।

ବିଦେଶୀ ସରକାର ଭାରତବର୍ଷକୁ ଭାରତ ଓ ପାକିସ୍ତାନ ଏପରି ଦୁଇ ଖଣ୍ଡରେ ବିଭକ୍ତ କରି ବିଦାୟ ନେଲେ । ଏହି ସମୟରେ ବିଧାନ ପରିଷଦରେ ଭାରତ ପାଇଁ ସମ୍ବିଧାନ ଗଠନ ଚାଲିଥିଲା ।

ନେହେରୁଙ୍କ ଉପରେ ତାହାର ପ୍ରଧାନ ଦାୟିତ୍ୱ ପଡ଼ିଥିଲା । ୧୯୪୮ ସାଲ ଜାନୁୟାରୀ ମାସ ୩୦ ତାରିଖ ଦିନ ହତ୍ୟାକାରୀର ଗୁଳିଘାତରେ ମହାତ୍ମାଗାନ୍ଧି ପ୍ରାଣ ହରାଇଲେ । ଏହା ଫଳରେ ଜବାହରଲାଲ ଦ୍ୱିତୀୟ ଥର ପାଇଁ ପିତୃଶୋକ ଭୋଗ କଲେ ।

ଜବାହରଲାଲ ଜ୍ଞାନୀ ଓ ପଣ୍ଡିତ । ତାଙ୍କର ଲେଖିବା ଓ କହିବା ଶକ୍ତି ଅଦ୍ୱିତୀୟ । ସେ ଯେଉଁସବୁ ବହି ଲେଖିଛନ୍ତି, ତାହା ଲକ୍ଷ ଲକ୍ଷ ସଂଖ୍ୟାରେ ଦେଶ ବିଦେଶରେ ବିକ୍ରି ହେଉଛି । ତାଙ୍କର ସାହସ ଅଦମ୍ୟ । କୌଣସି ବିପଦ ଆପଦରେ ସେ କଦାପି ମ୍ରିୟମାଣ ହେବାର ଦେଖାଯାଇ ନାହିଁ । ବୈଦେଶିକ ରାଜନୀତି ବିଷୟରେ ତାଙ୍କର ଅତି ଅଧିକ ଦକ୍ଷତା ଥିଲା ।

ସେ ଆମେରିକା, ରୁଷିଆ, ଚୀନ, ଜାପାନ, ଇଂଲଣ୍ଡ ଆଦି ବିଭିନ୍ନ ଦେଶ ଭ୍ରମଣ କରି ପୃଥିବୀର ଯୁଦ୍ଧଭୟ ଦୂର କରିବା ପାଇଁ ଉଦ୍ୟମ ଚଳାଇଥିଲେ । ତାଙ୍କ ପ୍ରବର୍ତ୍ତିତ ବୈଦେଶିକ ନୀତି ଫଳରେ ପୃଥିବୀରେ ଭାରତର ସମ୍ମାନ ବୃଦ୍ଧି ପାଇଲା ।

ପଣ୍ଡିତ ନେହେରୁ ୧୯୫୮ ମସିହାରେ ଓଡ଼ିଶାକୁ ଆଗମନ କରି ହୀରାକୁଦ ବନ୍ଧ ଉଦ୍‌ଘାଟନ କରିଥିଲେ । ଭାରତର ପ୍ରଧାନମନ୍ତ୍ରୀ ଭାବରେ ପ୍ରାୟ ପ୍ରତିବର୍ଷ ସେ ଓଡ଼ିଶାକୁ ଆସୁଥିଲେ । ଭୁବନେଶ୍ୱର-ଠାରେ ଯେଉଁ କଂଗ୍ରେସ ଅଧିବେଶନ ହେଲା, ଶେଷଥର ପାଇଁ, ସେ ସେଥିରେ ଯୋଗଦାନ କରିଥିଲେ ।

ପଣ୍ଡିତ ଜବାହରଲାଲ ଯେ କେବଳ ସ୍ୱାଧୀନତା ଆଣିବାପାଇଁ ସର୍ବସ୍ୱ ତ୍ୟାଗ କରିଥିଲେ ସେତିକି ନୁହେଁ, ସ୍ୱାଧୀନ ଭାରତକୁ ନୂଆ କରି ଗଢ଼ିବା ପାଇଁ ସେ ପ୍ରାଣପଣେ ଚେଷ୍ଟା କରୁଥିଲେ । ସେ ଭାରତର ଅଦ୍ୱିତୀୟ ନେତା । ତାଙ୍କ ପରି ଜନନାୟକ ପୃଥିବୀରେ ବିରଳ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

୧୯୬୪ ମସିହା ମେ ମାସ ୨୭ ତାରିଖ ଦିନ ନୂଆ ଦିଲ୍ଲୀଠାରେ ପଣ୍ଡିତ ନେହେରୁ ସ୍ୱର୍ଗାରୋହଣ କଲେ ।

# ମୌଲାନା ଆଜାଦ

ମୌଲାନା ଆବୁଲ କାଲାମ୍ ଆଜାଦ ୧୮୮୮ ସାଲରେ ମୁସଲମାନମାନଙ୍କର ପବିତ୍ର ତୀର୍ଥ ମକ୍କା ନଗରୀରେ ଜନ୍ମଗ୍ରହଣ କରିଥିଲେ । ହଜରତ୍ ଶେଖ ଜମାଲୁଦ୍ଦିନ ନାମକ ତାଙ୍କର ଜଣେ



ପୂର୍ବପୁରୁଷ ସମ୍ରାଟ୍ ଆକ୍‌ବରଙ୍କ ରାଜଦରବାରର ବଡ଼ ପଣ୍ଡିତ ଥିଲେ । ତାଙ୍କୁ ରାଜ ସମ୍ମାନ ଜାଗିର; ଧନରତ୍ନ ଓ ମାସିକ ଭତ୍ତା ଦେଇ ଧର୍ମଶିକ୍ଷାକେନ୍ଦ୍ର ବିଦ୍ୟାଳୟରେ ପ୍ରଧାନ ପରିଚାଳକ ପଦରେ

ନିଯୁକ୍ତ କରିବାକୁ ସମ୍ରାଟ ଇଚ୍ଛା କରିଥିଲେ । ହଜରତ୍ ଜମାଲୁଦ୍ଦିନ ରାଜ ଅନୁଗ୍ରହ ଗ୍ରହଣ କରି ନିଜକୁ ଅପବିତ୍ର କରିବେ ନାହିଁ ବୋଲି ପ୍ରକାଶ କରିବାରୁ ସମ୍ରାଟଙ୍କର ରୋଷଦୃଷ୍ଟିରେ ପଡ଼ିଥିଲେ । ମୌଲାନା ଆଜାଦ୍‌ଙ୍କ ପୂର୍ବପୁରୁଷମାନଙ୍କ ଭିତରୁ ଅନେକେ ମୁସଲମାନମାନଙ୍କ ଭିତରେ ଥିବା ସୁଫୀ ସମ୍ପ୍ରଦାୟର ଗୁରୁ ।

ମୌଲାନା ଆଜାଦଙ୍କର ପିତା ଖାଇରୁଦ୍ଦିନ ମଧ୍ୟ ଜଣେ ବଡ଼ ପଣ୍ଡିତ ଥିଲେ । ସେ ଆରବୀ, ପାର୍ସିଭାଷାରେ ବଡ଼ ବଡ଼ ଗ୍ରନ୍ଥ ରଚନା କରିଥିଲେ । ସୁଫୀ ସମ୍ପ୍ରଦାୟର ସେ ଧର୍ମଗୁରୁ ଥିଲେ; ତାଙ୍କର ହଜାର ହଜାର ଶିଷ୍ୟ ଥିଲେ । ୧୮୫୭ ସାଲର ପ୍ରଥମ ସ୍ୱାଧୀନତା ସଂଗ୍ରାମ ପରେ ଦିଲ୍ଲୀରେ ଥିବା ମୁସଲମାନମାନଙ୍କ ଉପରେ ପ୍ରବଳ ଅତ୍ୟାଚାର ହୋଇଥିଲା । ଏହା ଫଳରେ ମୌଲାନା ଆଜାଦଙ୍କ ପିତା ଭାରତ ଛାଡ଼ି ମକ୍କା ନଗରୀରେ ଆଶ୍ରୟ ନେଇଥିଲେ । ତାଙ୍କ ରଚିତ ଅନେକ ଗୁଡ଼ିଏ ଗ୍ରନ୍ଥ ମିଶରର ରାଜଧାନୀ କାଏରୋଠାରେ ପ୍ରକାଶିତ ହୋଇଥିଲା । ସେତେବେଳେ ମୁସଲମାନ ଜଗତରେ ଧର୍ମ ବିଷୟରେ ଶ୍ରେଷ୍ଠପୁରୁଷ ଥିଲେ ସୁଲତାନ୍ ଅବ୍‌ଦୁଲ୍ ମଜିଦ । ଖଲିଫା ମୁସଲମାନ-ମାନଙ୍କର ସର୍ବଶ୍ରେଷ୍ଠ ଧର୍ମଗୁରୁ । ସୁଲତାନ ଅବଦୁଲ ମଜିଦ୍ ଖାଇରୁଦ୍ଦିନଙ୍କୁ ତୁରସ୍କର ରାଜଧାନୀ କନଷ୍ଟାଣ୍ଟିନୋପାଲକୁ ନିମନ୍ତ୍ରଣ କରିନେଇ ଯାଇଥିଲେ; କିନ୍ତୁ ସେ ସୁଲତାନଙ୍କ ଦରବାରରେ ବେଶି ଦିନ ନ ରହି ମକ୍‌କାକୁ ଫେରି ଆସିଥିଲେ । ସେଠାରେ ଅବସ୍ଥାନ ସମୟରେ ବିଖ୍ୟାତ ପଣ୍ଡିତ ଶେଖ୍ ମହମ୍ମଦ ଜାହିର ଇଭିରିଙ୍କ କନ୍ୟାଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ସେ ମଧ୍ୟ ଉଚ୍ଚଶିକ୍ଷିତା ଥିଲେ । ତାଙ୍କର ଗର୍ଭରୁ ମୌଲାନା ଆଜାଦଙ୍କ ଜନ୍ମ ।

ଭାରତରେ ମୌଲାନା ଖାଇରୁଦ୍ଦିନଙ୍କର ଅନେକ ଶିଷ୍ୟ ଥିଲେ। ସେମାନଙ୍କର ବାରମ୍ବାର ଅନୁରୋଧ ଫଳରେ ସେ ଏ ଦେଶକୁ ଫେରିଆସି କଲିକତାଠାରେ ଘର କରି ରହିଲେ। ସେତେବେଳକୁ ମୌଲାନା ଆଜାଦ୍‌ଙ୍କର ବୟସ ଦଶବର୍ଷ। ସେ ଏଠାରେ ହିଁ ପ୍ରଥମେ ଶିକ୍ଷାଲାଭ କରିଥିଲେ। ମୌଲାନା ଆଜାଦ୍‌ଙ୍କ ମାଆ ଆରବଦେଶର ଲୋକ ଥିବାରୁ ସେ ଆରବୀଭାଷାରେ କଥା କହୁଥିଲେ। ପରେ ସେ ସ୍ୱାମୀଙ୍କ ନିକଟରୁ ଉର୍ଦ୍ଦୁ ଓ ପାର୍ସି ଭାଷା ଶିଖିଥିଲେ। କଲିକତାରେ ପହଞ୍ଚିଲାବେଳକୁ ସେ ଏହି ତିନିଭାଷାରେ ଭଲଭାବରେ କଥାଭାଷା ଓ ଲେଖି ପଢ଼ି ଜାଣିଥିଲେ। ପିଲାଦିନେ ମୌଲାନା ଆଜାଦ୍ ଆରବୀ-ଭାଷାରେ କଥା କହୁଥିଲେ। ବିଦ୍ୟାଶିକ୍ଷା ଦିଗରେ ତାଙ୍କର ବିଶେଷ ଦକ୍ଷତା ଥିଲା। ତାଙ୍କୁ ୧୨ ବର୍ଷ ବୟସ ହେଲାବେଳକୁ ସେ ଆରବୀ, ପାର୍ସି, ଭାଷାତତ୍ତ୍ୱ, ଦର୍ଶନ ଓ ତର୍କଶାସ୍ତ୍ର ଅଧ୍ୟୟନ କରିଥିଲେ। ତାଙ୍କର ପିତା ନିଜେ ପଣ୍ଡିତ। ବହୁ ବଡ଼ ବଡ଼ ପଣ୍ଡିତ ଅନେକ ସମୟରେ ତାଙ୍କ ଘରକୁ ଆସି ନାନା ବିଷୟରେ ଆଲୋଚନା କରୁଥିଲେ। ୧୦ ବର୍ଷ ବେଳକୁ ଅବୁଲକାଲାମ ଏ ସବୁ ଜ୍ଞାନର ଅଧିକାରୀ ହୋଇ ପାରିଥିଲେ।

ଉଚ୍ଚଶିକ୍ଷା ପାଇବା ପାଇଁ ୧୯୦୫ ସାଲରେ ସେ ମିଶରଦେଶର ବିଖ୍ୟାତ ଅଲ୍‌ଆଜାର ବିଶ୍ୱବିଦ୍ୟାଳୟକୁ ଯାଇଥିଲେ। ସେଠାରେ ଦୁଇ ବର୍ଷ ଅଧ୍ୟୟନ କରି ସେ ୧୯୦୭ରେ ଭାରତବର୍ଷକୁ ଫେରି ଆସିଲେ।

ମିଶରରେ ପାଠ ପଢ଼ୁଥିବା ସମୟରେ ସେ ବହୁ ବିପ୍ଳବବାଦୀ ନେତାଙ୍କ ସହିତ ପରିଚିତ ହୋଇଥିଲେ। ଆରବ, ପାରସ୍ୟ, ତୁରସ୍କ ଆଦି ମୁସଲମାନ ଦେଶମାନଙ୍କ ଉପରେ ଇଉରୋପର ବିଭିନ୍ନ

ଦେଶ ଉପର ଅଧିକାର ବିସ୍ତାର କରୁଛନ୍ତି, ତାହା ସେ ନିଜେ ବୁଝି ପାରିଥିଲେ । ସେ ଯାହା ଜାଣି ପାରିଥିଲେ; ସେ ସମୟରେ ଭାରତର କୌଣସି ମୁସଲମାନ ନେତାଙ୍କ ପକ୍ଷରେ ତାହା ଜାଣିବାର ସୁବିଧା ନ ଥିଲା । ଇଂରେଜ ସରକାରଙ୍କ ପ୍ରତି ଅନୁରକ୍ତ ରହିଲେ ସବୁ ସୁବିଧା ମିଳିଯିବ ବୋଲି ଭାବି ସେମାନେ ସରକାରଙ୍କ ଶରଣ ପଶିଥିଲେ; ତେଣୁ ଭାରତକୁ ଫେରିବା ପରେ ସେମାନଙ୍କ ସହିତ ମୌଲାନା ଆଜାଦ ଏକମତ ହୋଇ ପାରିଲେ ନାହିଁ ।

୧୯୦୯ ସାଲରେ ମୌଲାନା ଆଜାଦ୍‌ଙ୍କ ପିତା କଲିକତା ନଗରୀରେ ପ୍ରାଣତ୍ୟାଗ କଲେ । ଆଜାଦ୍ ସେଠାରେ ରହି ନାନାଶାସ୍ତ୍ର ଅଧ୍ୟୟନ କରିବାରେ ମନୋନିବେଶ କଲେ । ଏହି ଅଳ୍ପ ସମୟଭିତରେ ସେ ଇଂରେଜୀ ଭାଷା ଶିଖି ପାରିଥିଲେ । ତାଙ୍କ ପିତାଙ୍କର ଅନେକ ହିନ୍ଦୁ ଶିଷ୍ୟ ଥିଲେ । ମୌଲାନା ଆଜାଦ୍ ସେମାନଙ୍କ ସହିତ ବେଳେ ବେଳେ ଶାସ୍ତ୍ର ଆଲୋଚନା କରୁଥିଲେ । ଏହିସବୁ କାରଣରୁ ସେ ଚିରକାଳ ହିନ୍ଦୁ ମୁସଲମାନ ଏକତାର ଏକନିଷ୍ଠ ସାଧକ ହୋଇଥିଲେ ।

ନିଜ ମତ ପ୍ରଚାର କରିବାପାଇଁ ସେ ଗୋଟିଏ ପତ୍ରିକା ପ୍ରକାଶ କରିଥିଲେ । ସେଥିରେ ବାହାରୁଥିବା ଲେଖା ଦେଖି ମୁସଲମାନ-ମାନଙ୍କ ଭିତରେ ବଡ଼ ବଡ଼ ପଣ୍ଡିତମାନେ ମଧ୍ୟ ଆଶ୍ଚର୍ଯ୍ୟ ହୋଇ-ଯାଉଥିଲେ । ଏହି ଅଳ୍ପ ବୟସରେ ମଧ୍ୟ ପଣ୍ଡିତମାନଙ୍କର ଗୋଟିଏ ବଡ଼ ସଭାରେ ସେ ତିନିଘଣ୍ଟା କାଳ ବକ୍ତୃତା ଦେଇ ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଥିଲେ ।

ଭାରତରେ ବିପ୍ଳବ ନିଆଁ ଲାଗିଲା । ମୌଲାନା ଆଜାଦ୍ କ୍ରମେ କ୍ରମେ ସେ ଆଡ଼କୁ ଟାଣି ହୋଇଗଲେ । ମିଶରରୁ ଫେରିବା

ପରେ ସେ ଦେଖିଲେ ଯେ, ସାର ସୟଦ୍ ଅହମ୍ମଦଙ୍କ ପ୍ରଭାବରେ ମୁସଲମାନ ସମାଜ ବ୍ରିଟିଶ ଶାସକର ପରମ ଭକ୍ତ ହୋଇଛି । ଅନ୍ୟ ପକ୍ଷରେ ହିନ୍ଦୁମାନେ ଦେଶକୁ ମୁକ୍ତ କରିବାପାଇଁ ନାନା ଭାବରେ ଲଢ଼େଇ ଚଳାଇଛନ୍ତି । ମୌଲାନା ଆଜାଦ୍ ମୁସଲମାନମାନଙ୍କ ମନରେ ଥିବା ଦାସଭାବକୁ ପରିବର୍ତ୍ତନ କରିବାରେ ଲାଗିପଡ଼ିଲେ । ଏଥିପାଇଁ ୧୯୧୨ ଜୁଲାଇ ମାସ ୧୩ତାରିଖରେ ସେ 'ଆଲହେଲାଲ' ନାମକ ପତ୍ରିକା ପ୍ରକାଶ କଲେ । ଏଥିରେ ସେ ନିଜର ସ୍ୱାଧୀନମତ ପ୍ରଚାର କରିବାରେ ଲାଗିଲେ । ଏହା ଫଳରେ ମୁସଲମାନ ସମାଜରେ କେତେକାଂଶରେ ପରିବର୍ତ୍ତନ ଆସିଥିଲା ।

୧୯୧୪ରେ ପ୍ରଥମ ମହାଯୁଦ୍ଧ ଆରମ୍ଭ ହେଲା । ଇଂରେଜ ସରକାର ମନେକଲେ ଯେ ମୌଲାନା ଆଜାଦ୍ ଜର୍ମାନୀ ପକ୍ଷରେ ପ୍ରଚାର ଚଳାଇଛନ୍ତି । ତାହା ଫଳରେ ତାଙ୍କୁ ପଞ୍ଜାବ, ଯୁକ୍ତପ୍ରଦେଶ ଓ ମାନ୍ଦ୍ରାଜରେ ପ୍ରବେଶ କରିବାକୁ ମନା କରାଗଲା । ତତ୍ପରେ ୧୯୧୫ ସାଲ ଏପ୍ରିଲ ମାସ ୭ତାରିଖ ଦିନ ବଙ୍ଗଳା ସରକାର ସେ ପ୍ରଦେଶରୁ ତାଙ୍କୁ ତଡ଼ିଦେଲେ । ସ୍ୱାସ୍ଥ୍ୟଲାଭ ଆଶାରେ ରାଞ୍ଚିଠାରେ ଆଶ୍ରୟ ନେବା ସମୟରେ ଭାରତ ସରକାର ତାଙ୍କୁ ସେଠାରେ ନଜରବନ୍ଦୀ କରି ରଖିଲେ । ଏହି ଅନ୍ତରୀଣ ଅବସ୍ଥାରେ ସେ କେତେଗୁଡ଼ିଏ ବଡ଼ ବଡ଼ ଗ୍ରନ୍ଥ ଲେଖିଥିଲେ ।

୧୯୨୦ରେ ତାଙ୍କୁ ମୁକ୍ତି ଦିଆଗଲା । ସେ ଦେଖିଲେ; ସେତେବେଳେ ରଓଲେଟ୍ ଆଇନର ପ୍ରତିବାଦ କରିବା ପାଇଁ ମହାତ୍ମାଗାନ୍ଧି ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିଛନ୍ତି । ଏହାପରେ ପରେ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ଓ ପଞ୍ଜାବ ଅତ୍ୟାଚାର ଘଟିଲା । ଯୁଦ୍ଧ ସମୟରେ ବ୍ରିଟିଶ ସରକାର ଭାରତର ମୁସଲମାନ-

ମାନଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ତାହା ରକ୍ଷା ନ କରିବାରୁ ଖିଲାଫତ୍ ଆନ୍ଦୋଳନ ଆରମ୍ଭ ହେଲା । ୧୯୨୧ ଜାନୁୟାରୀ ମାସ ୧୮ ତାରିଖ ଦିନ ପ୍ରଥମେ ଦିଲ୍ଲୀଠାରେ ଗାନ୍ଧିଜୀଙ୍କ ସହିତ ତାଙ୍କର ସାକ୍ଷାତ୍ ହୋଇଥିଲା । ଦୁହିଁଙ୍କ ଆଲୋଚନା ଫଳରେ ଅସହଯୋଗ ଆନ୍ଦୋଳନର କାର୍ଯ୍ୟପନ୍ଥା ସ୍ଥିର ହେଲା । ହିନ୍ଦୁ ଓ ମୁସଲମାନ ଉଭୟେ ଏହାକୁ ଗ୍ରହଣ କଲେ ।

ଅସହଯୋଗ ଆନ୍ଦୋଳନର ପ୍ରଥମ କେତେ ବର୍ଷ ଦେଶ ପକ୍ଷରେ ମହା ଗୌରବମୟ ସମୟ ଥିଲା । ସେ ସମୟରେ ହିନ୍ଦୁ ଓ ମୁସଲମାନ ଦୁହେଁ ସର୍ବପ୍ରଥମେ ବୁଝିପାରିଲେ ଯେ, ସେମାନଙ୍କ ଭିତରେ ଏକତା ହେଲେ ଭାରତର ମୁକ୍ତି ନିଶ୍ଚିତ । ମହାତ୍ମାଗାନ୍ଧି, ମୌଲାନା ଅବୁଲ କାଲାମ ଆଜାଦ୍, ମହମ୍ମଦ ଅଲି, ଦେଶବନ୍ଧୁ ଚିତ୍ତରଞ୍ଜନ ଓ ପଣ୍ଡିତ ମୋତିଲାଲଙ୍କ ସାଧନା ଫଳରେ ଦେଶର ସବୁଆଡ଼େ ବିରାଟ ଆନ୍ଦୋଳନ ଲାଗିଗଲା । ସେଥିରେ ବ୍ରିଟିଶ ସରକାର ବିଚଳିତ ହୋଇ ପଡ଼ିଲା ଓ ଅନ୍ୟାନ୍ୟ ନେତାଙ୍କ ସହିତ ମୌଲାନା ଆବୁଲ କାଲାମ୍ ଆଜାଦ୍‌ଙ୍କୁ ବନ୍ଦୀ କଲା ।

ଚୌରିଚୌରା ହତ୍ୟାକାଣ୍ଡ ପରେ ମହାତ୍ମା ଗାନ୍ଧି ଅସହଯୋଗ ଆନ୍ଦୋଳନ ବନ୍ଦ କରିଦେଲେ । ତା'ପରେ ୬ ବର୍ଷ ପାଇଁ ସରକାର ତାଙ୍କୁ ବନ୍ଦୀ କଲେ । ମୁସଲମାନମାନଙ୍କ ମଧ୍ୟରେ ଅନେକ ଗୁଡ଼ିଏ ରାଜଭକ୍ତ ନେତା ଥିଲେ । ଅସହଯୋଗ ଆନ୍ଦୋଳନ ଫଳରେ ଦୁଇ ସମ୍ପ୍ରଦାୟ ମଧ୍ୟରେ ଯେଉଁ ଏକତା ଦେଖା ଦେଇଥିଲା, ତାକୁ ଉକ୍ତ ସରକାର କଷ୍ଟ କରି ପାରି ନ ଥିଲେ । ମହାତ୍ମା ଗାନ୍ଧି ଓ ଦେଶର ବଡ଼ ବଡ଼ ନେତାମାନେ ଜେଲରେ ରହିବା ସମୟର ସୁବିଧା ପାଇ ସେମାନେ ଦେଶରେ ଭେଦଭାବ ସୃଷ୍ଟି କରିବାରେ ଲାଗି-

ପଡ଼ିଲେ । ସେମାନଙ୍କର କାର୍ଯ୍ୟକଳାପ ଫଳରେ ଭାରତର କେତେକ ସ୍ଥାନରେ ସାମ୍ପ୍ରଦାୟିକ ଗଣ୍ଡଗୋଳ ଲାଗିଗଲା । ଏହାର ପ୍ରଭାବ କଂଗ୍ରେସରେ ଥିବା କେତେକ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟର ବଡ ବଡ଼ ନେତାଙ୍କ ଉପରେ ପଡ଼ିଲା । ସେମାନେ ଜାତୀୟ ଏକତାରେ ବିଶ୍ୱାସ ହରାଇ ବିଭିନ୍ନ ଦଳରେ ଯୋଗଦେଲେ; କିନ୍ତୁ ମୌଲାନା ଆଜାଦ ଦୁର୍ଦ୍ଦିନରେ ମଧ୍ୟ ହିମାଳୟ ପରି ଅଟଳ ରହିଲେ । ମହାତ୍ମା ଗାନ୍ଧି ଜେଲରୁ ମୁକ୍ତ ହେବା ପରେ ଦେଶର ଅବସ୍ଥା ଦେଖି ଦୁଃଖିତ ହେଲେ । ଏହା ପ୍ରାୟଶ୍ଚିତ୍ତ ପାଇଁ ସେ ୧୯୨୪ ସାଲ ସେପ୍ଟେମ୍ବର ମାସ ୧୮ ତାରିଖଠାରୁ ୨୧ ଦିନ ପର୍ଯ୍ୟନ୍ତ ଅନଶନ ବ୍ରତ ଅବଲମ୍ବନ କଲେ । ଦେଶସାରା ଚାଞ୍ଚଲ୍ୟ ଖେଳିଗଲା । ଦିଲ୍ଲୀରେ ଗୋଟିଏ ଏକତା ସମ୍ମିଳନୀ ବସିଲା । ମୌଲାନା ଆଜାଦ୍ ସମ୍ମିଳନୀରେ ଶ୍ରେଷ୍ଠଭାଗ ଗ୍ରହଣ କରିଥିଲେ । ତାହା ଫଳରେ ଗୋହତ୍ୟା ନିବାରଣ ଓ ମସଜିଦ୍ ଆଗରେ ବାଜା ବଜାଇବା ପ୍ରଶ୍ନ ସମାଧାନ ହୋଇଗଲା । ମହାତ୍ମା ଗାନ୍ଧି ଅନଶନ ଭଙ୍ଗକରି ଉଭୟ ସମ୍ପ୍ରଦାୟର ନେତାମାନଙ୍କୁ ମିଳାମିଶି ଚଳିବାପାଇଁ ଶପଥ କରାଇଥିଲେ । ମୌଲାନା ଆଜାଦ ସର୍ବପ୍ରଥମେ ଏ ଶପଥ ଗ୍ରହଣ କଲେ । ଶେଷ ପର୍ଯ୍ୟନ୍ତ ସେ ତାହା ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ।

୧୯୨୧ ଓ ୧୯୨୨ରେ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ଭିତରେ ଯେଉଁ ଏକତା ପ୍ରତିଷ୍ଠିତ ହୋଇଥିଲା, ତାହା ଦେଖି ଇଂରେଜ ସରକାର ପ୍ରମାଦ ଗଣିଥିଲେ । ଏହି ଭାବରେ ଏକତା ରହିଲେ, ସେମାନେ ବେଶି ଦିନ ଭାରତକୁ ନିଜ ଅଧିକାର ଭିତରେ ରଖିପାରିବେ ନାହିଁ ବୋଲି ଭଲଭାବେ ବୁଝିପାରିଲେ ।

ଫଳରେ ସରକାର ଏମାନଙ୍କ ଭିତରେ ବରାବର କଳହ ଲଗାଇବାର ଉଦ୍ୟମ ଚଳାଇଲେ ।

୧୯୨୬ ଓ ୧୯୨୭ରେ କଲିକତାରେ ହିନ୍ଦୁ ଓ ମୁସଲମାନ-ମାନଙ୍କ ଭିତରେ ସାମ୍ପ୍ରଦାୟିକ ହଣାକଟା ଆରମ୍ଭ ହେଲା । ଅବସ୍ଥା ଏପରି ହେଲା ଯେ, ଶାନ୍ତି ସ୍ଥାପନ କରିବାକୁ ଗଲେ ମଧ୍ୟ ଲୋକଙ୍କୁ ପ୍ରାଣ ହରାଇବାକୁ ପଡ଼ୁଥିଲା, କିନ୍ତୁ ମୌଲାନା ଆଜାଦ୍ ଗଣ୍ଡଗୋଳ ଲାଗିଥିବା ଅଞ୍ଚଳମାନଙ୍କରେ ବୁଲି ଲୋକମାନଙ୍କ ଭିତରେ ଶାନ୍ତି ସ୍ଥାପନ କରିବାପାଇଁ ଚେଷ୍ଟା କରିଥିଲେ । ତା' ଫଳରେ କ୍ରମେ କ୍ରମେ ଅବସ୍ଥା ବଦଳି ଯାଇଥିଲା ।

୧୯୨୩ରେ ବ୍ୟବସ୍ଥାସଭାକୁ ଯିବା ଓ ପୁରୁଣା କାର୍ଯ୍ୟକ୍ରମ ନେଇ ଚଳିବା ପ୍ରଶ୍ନ ନେଇ କଂଗ୍ରେସ ଭିତରେ ଦୁଇ ଦଳ ସୃଷ୍ଟି ହେଲା । ସେ ବର୍ଷ ସେପ୍ଟେମ୍ବର ମାସରେ ଦିଲ୍ଲୀଠାରେ କଂଗ୍ରେସର ଗୋଟିଏ ବିଶେଷ ଅଧିବେଶନ ହୋଇଥିଲା । ସେଥିରେ ମୌଲାନା ଆଜାଦ୍ ସଭାପତି ହୋଇଥିଲେ । ତାଙ୍କର ନିର୍ଦ୍ଦେଶ ଅନୁସାରେ ସ୍ଥିର ହେଲା ଯେ, ଯେଉଁମାନେ ବ୍ୟବସ୍ଥା ସଭାକୁ ଯିବାକୁ ଚାହାନ୍ତି ସେମାନେ କଂଗ୍ରେସ ମଧ୍ୟରେ ରହି ଗଠନମୂଳକ କାମ କରିପାରନ୍ତି । ଏ ବ୍ୟବସ୍ଥା ଅନୁସାରେ ପଣ୍ଡିତ ମୋତିଲାଲ ଓ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ବ୍ୟବସ୍ଥା ସଭାରେ ପ୍ରବେଶ କରିଥିଲେ ।

୧୯୩୦ରେ କଂଗ୍ରେସ ଲବଣ ସତ୍ୟାଗ୍ରହ ଆରମ୍ଭ କଲା । ସେତେବେଳକୁ ମୁସଲମାନ ସମ୍ପ୍ରଦାୟର ଅନେକ ବଡ଼ ବଡ଼

ନେତା କଂଗ୍ରେସ ବିରୁଦ୍ଧରେ ଠିଆ ହୋଇଥିଲେ । ଫଳରେ ମୁସଲମାନ ସମ୍ପ୍ରଦାୟର ଲୋକ ଏଥିରେ ପୂର୍ଣ୍ଣପ୍ରାଣରେ ସହଯୋଗ କଲେ ନାହିଁ । ତଥାପି ମୌଲାନା ଆଜାଦ୍ କଂଗ୍ରେସ ମଞ୍ଚରେ ଅଟଳ ରହି ଜେଲ ବରଣ କରିଥିଲେ । ସେତେବେଳେ ତାଙ୍କୁ ନାନା ନିର୍ଯ୍ୟାତନା ସହିବାକୁ ପଡ଼ିଥିଲା ।

୧୯୩୭ରେ କଂଗ୍ରେସ ୮ଟି ପ୍ରଦେଶରେ ମନ୍ତ୍ରିତ୍ୱ ଗ୍ରହଣ କଲେ । ସେମାନଙ୍କୁ ଚଳାଇବାପାଇଁ ଗୋଟିଏ କମିଟି ଗଠିତ ହୋଇଥିଲା । ସେଥିରେ ସର୍ଦ୍ଦାର ପଟେଲ, ମୌଲାନା ଆଜାଦ୍ ଓ ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦ ସଭ୍ୟ ଥିଲେ । ମନ୍ତ୍ରୀମାନେ ପ୍ରଦେଶର ଶାସନ ଦାୟିତ୍ୱରେ ଥିଲେ ମଧ୍ୟ ଏ କମିଟିର ନିର୍ଦ୍ଦେଶ ଅନୁସାରେ ସେମାନେ ଚଳୁଥିଲେ । ଏହି କାମରେ ମୌଲାନା ଆଜାଦଙ୍କର ଅସାଧାରଣ ରାଜନୀତିକ ପ୍ରତିଭାର ପରିଚୟ ମିଳିଥିଲା ।

୧୯୩୯ରେ ପୁଣି ଥରେ ସେ ଜାତୀୟ କଂଗ୍ରେସର ସଭାପତି-ରୂପେ ନିର୍ବାଚିତ ହୋଇଥିଲେ । ସେହି ବର୍ଷ ଯୁଦ୍ଧ ଲାଗିଗଲା । ମୌଲାନା ଆଜାଦ୍ ଆପତ୍ତିଜନକ ବକ୍ତୃତା ଦେବା ଅଭିଯୋଗରେ ଗିରଫ ହୋଇ ଦେଡ଼ବର୍ଷ କାଳ ବନ୍ଦୀ ହେଲେ । ଏହା ପରେ ୧୯୪୨ ଅଗଷ୍ଟ ମାସରେ 'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହେଲା । ଭାରତର ବଡ଼ ବଡ଼ ନେତାଙ୍କ ସହିତ ସେ ମଧ୍ୟ ଅହମ୍ମଦ ନଗର ଦୁର୍ଗରେ ବନ୍ଦୀ ହୋଇ ରହିଲେ । ବନ୍ଦୀ ଥିବା ସମୟରେ ତାଙ୍କର ସ୍ତ୍ରୀ ସ୍ୱର୍ଗାରୋହଣ କଲେ । ସେ ସମୟରେ ମଧ୍ୟ ସ୍ତ୍ରୀଙ୍କୁ ଦେଖିବାପାଇଁ ସରକାର ତାଙ୍କୁ ଛାଡ଼ିଲେ ନାହିଁ ।

୧୯୪୫ରେ ବ୍ରିଟିଶ ସରକାର ପକ୍ଷରୁ କଂଗ୍ରେସ ସହିତ ମିଳାମିଶା କରିବା ପାଇଁ ଉଦ୍ୟମ ହେଲା । କଂଗ୍ରେସ ସଭାପତିରୂପେ

ମୌଲନା ଆଜାଦ୍ ଯେଉଁଥିରେ କଥାବାର୍ତ୍ତା ଚଳାଇଥିଲେ । ଏହା ଫଳରେ ଯେଉଁ ଅସ୍ଥାୟୀ ସରକାର ଗଠିତ ହେଲା ସେଥିରେ ସେ ଶିକ୍ଷା ବିଭାଗ ଦାୟିତ୍ୱରେ ରହିଲେ । ସ୍ୱାଧୀନ ଭାରତର ଶିକ୍ଷାମନ୍ତ୍ରୀ ରୂପେ ଏକାଗ୍ରଭାବରେ ଦେଶ ଓ ଜାତିର ସେବା କରି ସେ ୧୯୫୮ ମସିହା ଫେବୃୟାରୀ ମାସରେ ଦେହତ୍ୟାଗ କଲେ ।

ମୌଲନା ଆଜାଦ୍ ଅସାଧାରଣ ପଣ୍ଡିତ । ପାଣ୍ଡିତ୍ୟ ବିଷୟରେ ଦେଶ ବିଦେଶରେ ତାଙ୍କର ଖ୍ୟାତି ଥିଲା । ମୁସଲମାନ ଧର୍ମ ବିଷୟରେ ତାଙ୍କର ଗଭୀର ଜ୍ଞାନ ଥିଲା । ଅସଂଖ୍ୟ ମୁସଲମାନ ତାଙ୍କୁ ସମ୍ମାନ କରୁଥିଲେ । ତାଙ୍କର ଦେଶଭକ୍ତି ମଧ୍ୟ ଅସାଧାରଣ । ଭାରତର ସ୍ୱାଧୀନତା ଲାଭ ପାଇଁ ସେ ସବୁପ୍ରକାର କଷ୍ଟ ସହ୍ୟ କରିଥିଲେ । ଶେଷ ପର୍ଯ୍ୟନ୍ତ ସେ ଦେଶର ଉନ୍ନତି ପାଇଁ ପ୍ରାଣପଣେ ଲାଗିଥିଲେ । ଭାରତବାସୀ ତାଙ୍କୁ ଚିରଦିନ ପାଶୋରି ପାରିବେ ନାହିଁ ।

---

## ସାର୍ ରାଧାକୃଷ୍ଣନ୍

ପାଶ୍ଚାତ୍ୟ ଦେଶରେ ଗୋଟିଏ କଥା ଅଛି ଯେ, ଜନ୍ମରୁ ଭାରତର ଲୋକ ଦାର୍ଶନିକ । ବିଚାର ବୁଦ୍ଧି ଖର୍ଚ୍ଚ କରି ଭଲ କଅଣ, ମନ୍ଦ କଅଣ, ଭଲ ମନ୍ଦ କାହିଁକି ହେଉଛି, ଏ ପୃଥିବୀ କଅଣ, ମନୁଷ୍ୟ କଅଣ, ଏ ସବୁର ଗୂଢ଼ତତ୍ତ୍ୱ ଯେଉଁମାନେ ଆଲୋଚନା କରନ୍ତି, ସେମାନଙ୍କୁ ଦାର୍ଶନିକ କୁହାଯାଏ । ସେମାନେ ଜ୍ଞାନୀ । ଜ୍ଞାନୀଲୋକ ସବୁଠାରେ ପୂଜା ପାଆନ୍ତି; ତେଣୁ ଦାର୍ଶନିକମାନେ ସବୁଠାରେ ପୂଜ୍ୟ ।

ଯୁଗ ଯୁଗ ଧରି ଭାରତରେ ବଡ଼ ବଡ଼ ଦାର୍ଶନିକ ଜନ୍ମଗ୍ରହଣ କରିଛନ୍ତି । ସେମାନେ ଯେଉଁ ଦର୍ଶନଶାସ୍ତ୍ର ରଚନା କରି ଯାଇଛନ୍ତି, ତାହା ଦେଖି ଏ ଯୁଗରେ ସଭ୍ୟ ବୋଲାଉଥିବା ଦେଶର ବଡ଼ ବଡ଼ ପଣ୍ଡିତମାନେ ମଧ୍ୟ ବିସ୍ମିତ ହେଉଛନ୍ତି । ଆଶ୍ରମରେ ବସି ମୁନିଋଷିମାନେ ସବୁ ବିଦ୍ୟା ପରି ଏ ଶାସ୍ତ୍ର ମଧ୍ୟ ଆଲୋଚନା କରୁଥିଲେ । ଏହିପରି ଭାବରେ କେତେ ଯୁଗ ଅନ୍ତର୍ହିତ ହୋଇଗଲା । ତା'ପରେ ସାଧୁ, ସନ୍ନ୍ୟାସୀ ଓ ଧର୍ମପ୍ରଚାରକମାନେ ଏ ଜ୍ଞାନ ପ୍ରଚାର କଲେ । ଦୁଇଶହ ବର୍ଷ ପୂର୍ବେ ଏ ଦେଶକୁ ଇଂରେଜମାନେ ଆସିଲେ । ସେମାନେ ନିଜେ କିଛି ନ ଜାଣି ଭାରତବାସୀଙ୍କୁ ଅସଭ୍ୟ ବୋଲି ମନେ କରୁଥିଲେ ।

ଏ ଦେଶରେ ଗୁଣୀ, ଜ୍ଞାନୀ, ପଣ୍ଡିତମାନେ ତାଙ୍କ ପାଖରେ ଆଦର ପାଇବା ଚେଣିକ ଥାଉ ଘୃଣା ଓ ଅବଜ୍ଞାର ପାତ୍ର ହେଲେ । ତାହା ଫଳରେ ଜ୍ଞାନଚର୍ଚ୍ଚା କମିଗଲା ।

ଏ ଦେଶରେ ଇଂରାଜୀ ଶିକ୍ଷା ପ୍ରଚଳିତ ହେବା ପରେ ଲୋକେ ମନେକଲେ, କେବଳ ବିଲାତରେ କବି, ଦାର୍ଶନିକ ଆଦି ପଣ୍ଡିତ ଅଛନ୍ତି, ଆଉ ଏ ଦେଶରେ କିଛି ନାହିଁ । ଯେଉଁମାନେ ପାଠ ପଢ଼ିଲେ ସେମାନେ ଇଂରାଜୀ ଭାଷାକୁ ବଡ଼ କରି ଧରିଲେ । ଏ ଦେଶର ସବୁ ଜ୍ଞାନ ସଂସ୍କୃତ ଭାଷାରେ ଲିପିବଦ୍ଧ । ଇଂରାଜୀ ପାଠୁଆମାନେ ସଂସ୍କୃତକୁ ମୃତଭାଷା ବୋଲି ଘୃଣା କରି ପଢ଼ିଲେ ନାହିଁ । ଫଳରେ ଭାରତର ଜ୍ଞାନଭଣ୍ଡାରରେ ଅସଂଖ୍ୟ ଧନରତ୍ନ ପୂରି ରହିଥିଲେ ମଧ୍ୟ ସେ କଥା ଲୋକେ ଜାଣିପାରିଲେ ନାହିଁ ।

ଇତିହାସ ଦେଖିଲେ ଗୋଟାଏ କଥା ଜଣାପଡ଼େ— ଯେତେବେଳେ ଏ ଦେଶର ଜ୍ଞାନ ଲୁଚିଯିବା ପରି ଅବସ୍ଥାରେ ପହଞ୍ଚିଯାଏ, ସେତେବେଳେ ଜଣେ ଜଣେ ପ୍ରତିଭାବାନ୍ ପୁରୁଷ ଜନ୍ମ ହୋଇ ତାହାକୁ ପୁଣି ଉଜ୍ଜ୍ୱଳ କରିଦିଅନ୍ତି । ପୃଥିବୀର ସବୁ ଦେଶର ଦୃଷ୍ଟି ତାଙ୍କ ଉପରେ ପଡ଼ିଯାଏ । ଶ୍ରୀ ସର୍ବପଲ୍ଲୀ ରାଧାକୃଷ୍ଣନ୍ ସେହିପରି ଜଣେ ପ୍ରତିଭାବାନ୍ ବ୍ୟକ୍ତି । ସେ ଭାରତର ରାଷ୍ଟ୍ରପତି ଥିଲେ; କିନ୍ତୁ କେବଳ ସେହି କାରଣରୁ ସେ ବଡ଼ ନୁହନ୍ତି; ସେ ଜ୍ଞାନୀ ଏବଂ ପଣ୍ଡିତ । ସେ ପୃଥିବୀକୁ ଭାରତର ଦର୍ଶନଶାସ୍ତ୍ର ଓ ଭାରତର ଶିକ୍ଷା ସଭ୍ୟତାର ସନ୍ଧାନ ଦେଇଛନ୍ତି । ସେଥିପାଇଁ ସଭ୍ୟ ଦେଶମାନଙ୍କରେ ସେ ପୂଜ୍ୟ ହୋଇଛନ୍ତି ।

ମାନ୍ଦ୍ରାଜଠାରୁ ପ୍ରାୟ ୬୪ କିଲୋମିଟର ଦୂର ରେ ତିରୁତାନୀ ନାମରେ ଗୋଟିଏ ତୀର୍ଥସ୍ଥାନ ଅଛି । ଲକ୍ଷ ଲକ୍ଷ ଯାତ୍ରୀ ଏଠାକୁ ପୁଣ୍ୟ ଅର୍ଜ୍ଜନ କରିବାକୁ ଆସନ୍ତି । ଏହି ଗ୍ରାମରେ ଗୋଟିଏ ବ୍ରାହ୍ମଣ

ପରିବାରରେ ୧୮୮୮ ମସିହା ସେପ୍ଟେମ୍ବର ମାସ ୫ ତାରିଖ ଦିନ ରାଧାକୃଷ୍ଣନ୍ ଜନ୍ମଗ୍ରହଣ କରିଥିଲେ । ପୁରୁଷାନୁକ୍ରମେ ତାଙ୍କ ବଂଶରେ ଜ୍ଞାନଚର୍ଚ୍ଚା ହେଉଥିଲା । ରାଧାକୃଷ୍ଣନ୍‌ଙ୍କ ପିତା ଜଣେ ଜମିଦାର ଘରେ ଚାକିରି କରି ପରିବାର ପ୍ରତିପୋଷଣ କରୁଥିଲେ; କିନ୍ତୁ ତାଙ୍କଠାରେ ଯଥେଷ୍ଟ ଶାସ୍ତ୍ରଜ୍ଞାନ ଥିଲା । ସେ ନିଷ୍ଠାପର ଭାବରେ ଧର୍ମ ଆଚରଣ କରୁଥିଲେ । ରାଧାକୃଷ୍ଣନ୍ ତାଙ୍କର ଦ୍ୱିତୀୟ ସନ୍ତାନ ।



ରାଧାକୃଷ୍ଣନ୍‌ଙ୍କ ବୟସ ୧୨ ବର୍ଷ ହେବା ପର୍ଯ୍ୟନ୍ତ ସେ ତାଙ୍କ ଗ୍ରାମ ତିରୁତାନି ଓ ପ୍ରସିଦ୍ଧ ତୀର୍ଥ ତିରୁପତି ଛଡ଼ା ବାହାରକୁ ଯାଇ ନ ଥିଲେ । ତିରୁତାନି ଓ ତିରୁପତିରେ ପ୍ରସିଦ୍ଧ ମନ୍ଦିର ରହିଅଛି । ଏ ଗୁଡ଼ିକର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା ।

ପିଲାଦିନୁ ସେ ଏକାକୀ ବସି ବହି ପଢ଼ିବାକୁ ସୁଖ ପାଉଥିଲେ । ଯାହା ପଢ଼ିଥିଲେ ସେ ବିଷୟରେ ସେ ଚିନ୍ତା

କରୁଥିଲେ । ସେ ପ୍ରଥମେ ୭ ବର୍ଷ ଖ୍ରୀଷ୍ଟିୟାନ ମିଶନ ସ୍କୁଲରେ ପଢ଼ିଲେ । ୧୯୦୩ରେ ସେ କୃତିତ୍ୱ ସହିତ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମାନ୍ଦ୍ରାଜର ଖ୍ରୀଷ୍ଟିୟାନ୍ କଲେଜରେ ଉଚ୍ଚଶିକ୍ଷା ଲାଭ କଲେ । ଏଠାରେ ସେ ଏଫ୍. ଏ. ପରୀକ୍ଷାରେ ପ୍ରଥମଶ୍ରେଣୀ, ବି.ଏ. ଓ ଏମ୍. ଏ. ରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ ।

କଲେଜରେ ସେ ଦର୍ଶନ ଶାସ୍ତ୍ର ଅଧ୍ୟୟନ କରିଥିଲେ ସତ; କିନ୍ତୁ ସେଥିରେ ତାଙ୍କର ଜ୍ଞାନ ପୂର୍ଣ୍ଣତା ଲାଭ କରିପାରି ନ ଥିଲା, ପିଲାଦିନରୁ ସେ ହିନ୍ଦୁଧର୍ମକୁ ଗୋଟିଏ ବିରାଟ ଧର୍ମ ବୋଲି ମନେ କରୁଥିଲେ । ଛାତ୍ରାବସ୍ଥାରେ ସ୍ୱାମୀ ବିବେକାନନ୍ଦଙ୍କ ଲେଖା ପଢ଼ି ଏ ଦେଶର ଧର୍ମ କଣ, ତାହା ସେ ଭଲରୂପେ ବୁଝି ପାରିଥିଲେ ।

ସେ ଖ୍ରୀଷ୍ଟିୟାନ ସ୍କୁଲ ଓ କଲେଜରେ ପଢ଼ୁଥିଲେ । ସେଠାରେ ଖ୍ରୀଷ୍ଟ ଧର୍ମଯାଜକମାନେ ହିନ୍ଦୁଧର୍ମକୁ ତୁଚ୍ଛ ଜ୍ଞାନ କରୁଥିଲେ । ଏହା ଦେଖି ସେ ଧର୍ମ ବିଷୟରେ ନାନା ଆଲୋଚନା ଆରମ୍ଭ କଲେ । ପରବର୍ତ୍ତୀ କାଳରେ ସେ ପୃଥିବୀରେ ହିନ୍ଦୁଧର୍ମର ଗରିମା ପ୍ରକାଶ କରିଥିଲେ ।

କଲେଜରେ ଶିକ୍ଷା ସମାପ୍ତ ହେବା ଉତ୍ତାରୁ ସେ ମାନ୍ଦ୍ରାଜ ପ୍ରେସିଡେନ୍ସି କଲେଜରେ ସହକାରୀ ଦର୍ଶନ ଅଧ୍ୟାପକ ପଦରେ ନିଯୁକ୍ତ ହୋଇଥିଲେ । ସେ ଖୁବ୍ ଭଲଭାବରେ ଇଂରାଜୀ ଭାଷା କହି ପାରୁଥିଲେ । ତାଙ୍କର ପାଣ୍ଡିତ୍ୟ ଓ ମହାନୁଭବତା ଦେଖି ଛାତ୍ରମାନେ ତାଙ୍କୁ ସମ୍ମାନ କରୁଥିଲେ । ଏ ସମୟରେ ଦର୍ଶନଶାସ୍ତ୍ର ବିଷୟରେ ସେ କେତେଗୁଡ଼ିଏ ଗ୍ରନ୍ଥ ଲେଖିଥିଲେ । କ୍ରମେ କ୍ରମେ ତାଙ୍କର ଯଶ ଚାରିଆଡ଼େ ପ୍ରଚାରିତ ହେଲା । ମହୀଶୂର ରାଜ୍ୟରେ ଗୋଟିଏ

ନୂତନ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା । ସେଥିରେ ଦର୍ଶନ ଶାସ୍ତ୍ରର ଅଧ୍ୟାପକ କାର୍ଯ୍ୟ କରିବା ପାଇଁ ତାଙ୍କୁ ଡାକରା ଆସିଲା । ସେ ସେଠାରେ ତିନ ବର୍ଷ କାର୍ଯ୍ୟ କରିଥିଲେ ।

୧୯୨୧ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ କାର୍ଯ୍ୟ କରିଥିଲେ । ଏହି ସମୟରେ ସେ ଭାରତୀୟ ଦର୍ଶନ ଶାସ୍ତ୍ର ବିଷୟରେ ଖଣ୍ଡିଏ ଗ୍ରନ୍ଥ ଲେଖିଥିଲେ । ତାହା ଇଂଲଣ୍ଡରେ ପ୍ରକାଶିତ ହୋଇଥିଲା । ସେ ବହି ପଢ଼ି ପାଶ୍ଚାତ୍ୟ ଦେଶର ପଣ୍ଡିତମାନେ ଭାରତୀୟ ଧର୍ମର ମହତ୍ତ୍ୱ ବୁଝିପାରିଲେ ।

୧୯୨୬ ମସିହାରେ ବିଲାତରେ କେମ୍ବ୍ରିଜଠାରେ ଇଂରେଜ ସାମ୍ରାଜ୍ୟରେ ଥିବା ବିଶ୍ୱବିଦ୍ୟାଳୟଗୁଡ଼ିକର ଗୋଟିଏ ସମ୍ମିଳନୀ ହୋଇଥିଲା । ରାଧାକୃଷ୍ଣନ କଲିକତା ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରତିନିଧିରୂପେ ସେଥିରେ ଯୋଗ ଦେଇଥିଲେ । ସେଠାରେ ତାଙ୍କ ବକ୍ତୃତା ଶୁଣି ବିଲାତର ବଡ଼ ବଡ଼ ପଣ୍ଡିତ ମୁଗ୍ଧ ହୋଇଥିଲେ । ବଡ଼ ବଡ଼ ସଭାରେ ବକ୍ତୃତା ଦେବାପାଇଁ ତାଙ୍କୁ ଡାକରା ଆସିଲା । ଏହି ସମୟରେ ସେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ମାନ୍‌ଚେଷ୍ଟାର କଲେଜରେ ଦର୍ଶନ ଶାସ୍ତ୍ର ବିଷୟରେ ବକ୍ତୃତା ଦେଇଥିଲେ । ପରାଧୀନ ଭାରତର ଜଣେ ଅଧିବାସୀ ପକ୍ଷରେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ପରି ସ୍ଥାନରେ ବକ୍ତୃତା ଦେବା ଦେଶ ପକ୍ଷରେ କମ ଗୌରବର ବିଷୟ ନୁହେଁ ।

ଇଂଲଣ୍ଡରେ କାର୍ଯ୍ୟ ସମାପ୍ତ ହେବା ଉତ୍ତାରୁ ଆନ୍ତର୍ଜାତିକ ଦର୍ଶନ ସମ୍ମିଳନୀରେ ଯୋଗଦେବା ପାଇଁ ସେ ଆମେରିକା ଯାଇଥିଲେ । ଏହି ସମୟରେ ସେ ଚିକାଗୋ, ହାରଭାର୍ଡ, ପ୍ରିନ୍‌ସଟନ୍ ଆଦି ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେଇ ପ୍ରଶଂସା ଲାଭ କରିଥିଲେ ।

ଦେଶକୁ ଫେରିଲା ପରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ତାଙ୍କୁ ଡ଼.ଲିଟ୍. ଉପାଧି ପ୍ରଦାନ କରିଥିଲା ।

କିଛି ଦିନ ଭାରତରେ ରହିବା ପରେ ଅକ୍ସଫୋର୍ଡ଼ ବିଶ୍ୱ-ବିଦ୍ୟାଳୟରେ ଅଧ୍ୟାପକ କାର୍ଯ୍ୟ କରିବାପାଇଁ ତାଙ୍କୁ ନିମନ୍ତ୍ରଣ ଆସିଲା । ଅକ୍ସଫୋର୍ଡ଼ ବ୍ରିଟିଶ ସାମ୍ରାଜ୍ୟରେ ଶିକ୍ଷାର ପ୍ରଧାନ କେନ୍ଦ୍ରସ୍ଥଳ । ଏଠାରେ ଇଂଲଣ୍ଡର ପ୍ରଧାନମନ୍ତ୍ରୀମାନେ ଶିକ୍ଷାଲାଭ କରିଛନ୍ତି; ଏପରି ସ୍ଥାନରେ ଜଣେ ଭାରତୀୟ ଆଧ୍ୟାପକ ନିଯୁକ୍ତ ହେବା କମ୍ ଗୌରବର ବିଷୟ ନୁହେଁ ।

ଅକ୍ସଫୋର୍ଡ଼ରେ ଥିବା ସମୟରେ ସେ ବିଲାତର ନାନା ପଣ୍ଡିତ ସଭାରେ ବକ୍ତୃତା ଦେଉଥିଲେ । ଭାରତର ଧର୍ମ କେଡ଼େ ବିରାଟ ଏହା ଫଳରେ ଇଂରେଜ ଜାତିର ଲୋକେ ଜାଣିପାରିଲେ । ରାଧାକୃଷ୍ଣନ୍‌ଙ୍କ ବକ୍ତୃତା ଶୁଣିବା ପରେ ଥରେ ଜଣେ ବୟସ୍କା ମହିଳା କହିଥିଲେ, "ଭାରତକୁ ଖ୍ରୀଷ୍ଟିୟାନ୍ ଧର୍ମଯାଜକ ପଠାଇବା ବିଡ଼ମ୍ବନା ମାତ୍ର ।"

୧୯୩୦ ମସିହାରେ ଅକ୍ସଫୋର୍ଡ଼ରେ କାର୍ଯ୍ୟକାଳ ଶେଷକରି ରାଧାକୃଷ୍ଣନ୍ କଲିକତା ବିଶ୍ୱବିଦ୍ୟାଳୟକୁ ଫେରିଆସିଲେ । ତାଙ୍କପ୍ରତି ସମ୍ମାନ ଦେଖାଇ କଲିକତା ବିଶ୍ୱବିଦ୍ୟାଳୟ ତାଙ୍କୁ ଆଜୀବନ ଅଧ୍ୟାପକ ପଦରେ ନିଯୁକ୍ତ କଲେ । ଏହି ସମୟରେ ଇଂରେଜ ସରକାର ମଧ୍ୟ ତାଙ୍କୁ ନାଇଟ୍ ଉପାଧି ଦେଇଥିଲେ ।

୧୯୩୦ରେ ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ପଦରେ ନିଯୁକ୍ତ ହେଲେ । ୧୯୩୧ରୁ ୧୯୩୬ ପର୍ଯ୍ୟନ୍ତ ସେ ବିଶ୍ୱବିଦ୍ୟାଳୟର ନାନା ଉନ୍ନତି ସାଧନ କରିଥିଲେ । ୧୯୩୬ରେ ପୁଣି ସେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହୋଇଥିଲେ ।

ଏହି ସମୟରେ ବ୍ରିଟିଶ ଏକାଡେମୀ ଆଦି ବଡ଼ ବଡ଼ ପଣ୍ଡିତ-ସଭାର ସଭ୍ୟ ଥିଲେ । ତତ୍ପରେ ସେ ହିନ୍ଦୁ ବିଶ୍ୱବିଦ୍ୟାଳୟରେ କୁଳପତି ହୋଇଥିଲେ ।

୧୯୪୭ରେ ଭାରତ ସ୍ୱାଧୀନ ହେଲା । ସେ ଶିକ୍ଷା କ୍ଷେତ୍ର ଛାଡ଼ି ଦେଶସେବା କ୍ଷେତ୍ରକୁ ଆସିଲେ । ଭାରତ ଓ ଋଷିଆ ମଧ୍ୟରେ ବନ୍ଧୁତ୍ୱ ସ୍ଥାପନ କରିବା ପାଇଁ ସେ ଭାରତ ପକ୍ଷରୁ ରାଷ୍ଟ୍ରଦୂତ ନିଯୁକ୍ତ ହୋଇଥିଲେ । ସେଠାରେ ସେ ବିଶେଷ ପ୍ରଶଂସା ଲାଭ କରିଥିଲେ । ତତ୍ପରେ ଭାରତକୁ ଫେରି ସେ ଉପରାଷ୍ଟ୍ରପତିରୂପେ ନିର୍ବାଚିତ ହେଲେ । ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ କାର୍ଯ୍ୟକାଳ ଶେଷ ହେବା ପରେ ସାର୍ ରାଧାକୃଷ୍ଣନ୍ ରାଷ୍ଟ୍ରପତି ଭବନରେ ପାଞ୍ଚବର୍ଷ ସୁରୁଚିରୂପେ କାର୍ଯ୍ୟ ନିର୍ବାହ କରିଥିଲେ । ବର୍ତ୍ତମାନ ତାଙ୍କର ଜନ୍ମ ସ୍ଥାନରେ ଅବସର ଗ୍ରହଣ କରୁଛନ୍ତି ।

ଜାତିସଂଘର ଗୋଟିଏ ଶିକ୍ଷା ଓ ସଂସ୍କୃତି ଅନୁଷ୍ଠାନ ଅଛି । ବିଭିନ୍ନ ଜାତିର ଲୋକଙ୍କ ମଧ୍ୟରେ ସହଯୋଗ ସ୍ଥାପନ କରିବା ଏହି ଅନୁଷ୍ଠାନର ଉଦ୍ଦେଶ୍ୟ । ସାର ରାଧାକୃଷ୍ଣନ୍ ଆରମ୍ଭରୁ ଏଥିରେ ଭାରତର ପ୍ରତିନିଧି ପଦରେ ରହିଥିଲେ ।



# ନେତାଜୀ ସୁଭାଷଚନ୍ଦ୍ର

କଟକ ସହରର ଓଡ଼ିଆ ବଜାରରେ ଆଜି ମଧ୍ୟ ଜାନକୀନାଥ-ଭବନ ଘର ରହିଅଛି । ଏହି ଘରେ ସୁଭାଷଚନ୍ଦ୍ର ୧୮୯୭ ମସିହା ଜାନୁୟାରୀ ମାସ ୨୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ଏ ଘରଟି ଧନଜନରେ ପୂର୍ଣ୍ଣ ନ ଥିଲା । ସୁଭାଷଚନ୍ଦ୍ରଙ୍କ ପିତା ଶ୍ରୀ ଜାନକୀନାଥ ବୋଷ ଥିଲେ ସେ ସମୟର ବଡ଼ ସରକାରୀ ଓକିଲ । ସେ ମଧ୍ୟ ବଡ଼ ଦେଶପ୍ରେମୀ ଥିଲେ ।



ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ କଂଗ୍ରେସ କର୍ମୀମାନଙ୍କ ଉପରେ ଯେଉଁ ଅତ୍ୟାଚାର ହେଉଥିଲା, ତାହାର ପ୍ରତିବାଦ ସ୍ୱରୂପ ଜାନକୀବାବୁ ନିଜର ରାୟବାହାଦୂର ପଦ ଫେରାଇ ଦେଇଥିଲେ ।

ଜାନକୀନାଥଙ୍କର ୧୮ଟି ପୁଅ ଝିଅ । ସେମାନଙ୍କ ମଧ୍ୟରେ ସୁଭାଷଚନ୍ଦ୍ର ଚତୁର୍ଥ । ସେ ରେଭେନ୍‌ସା କଲେଜିଏଟ୍ ସ୍କୁଲର ଛାତ୍ର ଥିଲେ ।

୧୯୧୩ରେ ସେ କୃତିତ୍ୱ ସହିତ ମାଟ୍ରିକ୍ୟୁଲେସନ ପାସ୍ କରିଥିଲେ । ଅତି ଅଳ୍ପ ବୟସରେ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରିବା ସାମାନ୍ୟ ପ୍ରତିଭାର ପରିଚୟ ନୁହେଁ । ଏ ପର୍ଯ୍ୟନ୍ତ କଟକରେ ଶିକ୍ଷାଲାଭ କରିଥିଲେ ।

ତାପରେ କଲିକତାର ପ୍ରେସିଡେନ୍‌ସି କଲେଜରେ ସେ ବି. ଏ. ପଢ଼ିଲେ । ଏ ସମୟରେ ମଧ୍ୟ ଦେଶଭକ୍ତି ପାଇଁ ଦଣ୍ଡ ଭୋଗିବାକୁ ପଡ଼ିଥିଲା ।

ସେତେବେଳେ କେବଳ ଆଇ. ସି. ଏସ୍. ମାନଙ୍କୁ ଇଂରେଜ ସରକାର ବଡ଼ ଚାକିରି ଦେଉଥିଲେ । ବଡ଼ ହାକିମ ହେବା ସୁଭାଷଚନ୍ଦ୍ରଙ୍କର ଆଦୌ ଲକ୍ଷ୍ୟ ନ ଥିଲା; କିନ୍ତୁ ତାଙ୍କ ପିତାମାତାଙ୍କର ଆଦେଶକ୍ରମେ ତାଙ୍କୁ ବିଲାତ ଯାଇ ଆଇ. ସି. ଏସ୍. ପଢ଼ିବାକୁ ହେଲା । ସେ ଅତି ଅଳ୍ପ ସମୟ ମଧ୍ୟରେ ଆଇ. ସି. ଏସ୍. ପରୀକ୍ଷାରେ ଚତୁର୍ଥ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲେ ।

ଇଂରାଜୀରୁ ଭାରତୀୟ ଭାଷାରେ ଅନୁବାଦ କରିବା ଆଇ.ସି. ଏସ୍. ପରୀକ୍ଷାରେ ଗୋଟିଏ ବିଷୟ ଥିଲା । 'ଭାରତୀୟ ସିପାହୀମାନେ ଅସାଧୁ'—ଏହିପରି ଗୋଟିଏ ଇଂରେଜୀ ବାକ୍ୟ ତାଙ୍କୁ ତର୍ଜମା କରିବାକୁ ଦିଆହୋଇଥିଲା । ସୁଭାଷଚନ୍ଦ୍ର ଏହାର ପ୍ରତିବାଦ କରି ଉତ୍ତର ନ ଲେଖି ସାହେବ ପରୀକ୍ଷକଙ୍କୁ କହିଲେ "ଦେଶ ଓ ଜାତି ମୁହଁରେ କାଳି ବୋଳି ନିଜର ଉନ୍ନତି କରିବା ତାଙ୍କର ଇଚ୍ଛା ନୁହେଁ ।" ଏହା କହି ସୁଭାଷଚନ୍ଦ୍ର ଫେରି ଆସିଲେ । ତାପରେ ସେ ଆଇ. ସି. ଏସ୍. ପଦ ତ୍ୟାଗ କରିଥିଲେ । ପରେ କ୍ୟାମ୍ବ୍ରିଜ ବିଶ୍ୱ-

ବିଦ୍ୟାଳୟରେ ବି. ଏ. ପାସ କରି ସେ ଭାରତକୁ ଆସିଲେ । ଏହା ୧୯୨୧ର କଥା ।

ସେତେବେଳେ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଦେଶରେ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୋଇଥିଲା । ବଙ୍ଗଳାରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଆନ୍ଦୋଳନ ଚଳାଉଥିଲେ । ସୁଭାଷଚନ୍ଦ୍ର ତାଙ୍କ ସହିତ ଯୋଗ ଦେଲେ । ସେହି ସମୟରେ ସେ ସ୍ୱେଚ୍ଛାସେବକବାହିନୀ ଗଠନ କରିଥିଲେ ।

ସରକାରୀ ସ୍କୁଲ କଲେଜ ବର୍ଜନ କରିବା ଅସହଯୋଗ ଆନ୍ଦୋଳନର ଗୋଟିଏ କାର୍ଯ୍ୟକ୍ରମ ଥିଲା । ଛାତ୍ରମାନଙ୍କୁ ଜାତୀୟ ଧାରାରେ ଶିକ୍ଷା ଦେବାପାଇଁ କଲିକତାରେ ଗୋଟିଏ ଜାତୀୟ କଲେଜ ସ୍ଥାପନ କରାଯାଇଥିଲା । ଏହାର ପରିଚାଳନା ଭାର ଦେଶବନ୍ଧୁ ଚିତ୍ତରଞ୍ଜନ ସୁଭାଷଚନ୍ଦ୍ରଙ୍କ ଉପରେ ଦେଇଥିଲେ ।

ବଙ୍ଗ ପ୍ରଦେଶରେ ତାଙ୍କର ପ୍ରଭାବ କ୍ରମେ କ୍ରମେ ବୃଦ୍ଧି ପାଇଲା । ୧୯୨୧ରେ ବ୍ରିଟିଶ ଯୁବରାଜ ଭାରତକୁ ଆସିଲେ । ସେତେବେଳେ କଲିକତାରେ ପୂର୍ଣ୍ଣ ହରତାଳ ପାଳିତ ହୋଇଥିଲା । ଏହା ଦେଖି ଇଂରେଜ ସରକାର ବିବ୍ରତ ହେଲେ । ଶହ ଶହ ଦେଶବାସୀଙ୍କୁ ଧରି ଜେଲ ଦେଲେ । ଏ ସମ୍ପର୍କରେ ସୁଭାଷଚନ୍ଦ୍ର ମଧ୍ୟ ୬ ମାସ ଜେଲ ଯାଇଥିଲେ । ଏହା ତାଙ୍କର ପ୍ରଥମ କାରାବାସ ।

ଜେଲରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ପୁଣି ସେ ଦେଶ କାମରେ ଲାଗିପଡ଼ିଲେ । ସେ ବର୍ଷ ବଙ୍ଗଳାରେ ପ୍ରବଳ ବନ୍ୟା ହୋଇଥିଲା । ହଜାର ହଜାର ଲୋକ ଗୃହଶୂନ୍ୟ ହୋଇଥିଲେ । ଦଳେ ସ୍ୱେଚ୍ଛାସେବକ ଧରି ସୁଭାଷଚନ୍ଦ୍ର ଲୋକଙ୍କୁ ସାହାଯ୍ୟ କରିବାକୁ ବାହାରିଲେ । ତାଙ୍କର ତ୍ୟାଗ ଓ ନିରଳସ ଜନସେବା ଦେଖି

ଲୋକେ ମୁଗ୍ଧ ହୋଇଥିଲେ । ଏପରି କି ସେ ସମୟରେ ବଙ୍ଗଦେଶର ଲାଟ ଲର୍ଡ଼ ଲିଟନ ମଧ୍ୟ ତାଙ୍କ କାର୍ଯ୍ୟକୁ ପ୍ରଶଂସା ନ କରି ରହି-ପାରିଲେ ନାହିଁ ।

୧୯୨୩ରେ ମହାତ୍ମାଗାନ୍ଧି ଅସହଯୋଗ ଆନ୍ଦୋଳନ ବନ୍ଦ କରିଦେଲେ । ୧୯୨୪ରେ କଲିକତା କର୍ପୋରେସନ ନିର୍ବାଚନ ହେଲା । ସେଥିରେ କଂଗ୍ରେସ ଲୋକେ ଅଧିକ ସଂଖ୍ୟାରେ ନିର୍ବାଚିତ ହୋଇଥିଲେ । ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ମେୟର ପଦ ଗ୍ରହଣ କଲେ । ସୁଭାଷଚନ୍ଦ୍ର କର୍ପୋରେସନର ପ୍ରଧାନ କର୍ମକର୍ତ୍ତା ରୂପେ ନିଯୁକ୍ତ ହେଲେ । ଏହି କାର୍ଯ୍ୟପାଇଁ ତାଙ୍କୁ ମାସିକ ୩୦୦ ଟଙ୍କା ଦରମା ମିଳୁଥିଲା; ମାତ୍ର ସୁଭାଷଚନ୍ଦ୍ର ତାହାର ଅଧେ ନେଉଥିଲେ । ସେଥିରୁ ଗୋଟିଏ ପଇସା ନିଜପାଇଁ ଖର୍ଚ୍ଚ ନ କରି ସେ ସମୁଦାୟ ଟଙ୍କା ଗରିବ ଓ ବିପନ୍ନ ଲୋକଙ୍କୁ ସାହାଯ୍ୟ ଦେଉଥିଲେ । ଏହି ସମୟରେ ଶହ ଶହ ଦେଶକର୍ମୀଙ୍କୁ ସେ କର୍ପୋରେସନରେ ଚାକିରି ଦେଇଥିଲେ । ତାଙ୍କର ନିର୍ଦ୍ଦେଶରେ କର୍ପୋରେସନ କର୍ମଚାରୀମାନେ ଖଦଡ଼ ପିନ୍ଧିଲେ । ଲାଟଙ୍କୁ ଅଭିନନ୍ଦନ ଦେବା ପରିବର୍ତ୍ତେ ଦେଶର ପୂଜ୍ୟ ନେତାମାନଙ୍କୁ କର୍ପୋରେସନ ପକ୍ଷରୁ ସମ୍ବର୍ଦ୍ଧନା କରାଗଲା । ଇଂରେଜ ସରକାରଙ୍କ ଆଖି ଆଗରେ ତାଙ୍କର ଅଧୀନରେ ଥିବା କଲିକତା କର୍ପୋରେସନ ଗୋଟିଏ ସ୍ୱାଧୀନ ଅନୁଷ୍ଠାନରୂପେ ପରି-ଚାଳିତ ହେଲା । ବିଦେଶୀଙ୍କ ପକ୍ଷରେ ଏ କଥା ସହିବା ଅସମ୍ଭବ । ସେମାନେ ୧୯୨୪ରେ ସୁଭାଷଚନ୍ଦ୍ରଙ୍କୁ ବନ୍ଦୀ କଲେ । ବିନା ବିଚାରରେ ତାଙ୍କୁ ବ୍ରହ୍ମଦେଶର ଗୋଟିଏ ଜେଲରେ ବନ୍ଦୀ କରାଗଲା । ଜେଲରେ ଅସ୍ୱାସ୍ଥ୍ୟକର ଅବସ୍ଥାଯୋଗୁଁ ସେ ରୋଗାକ୍ରାନ୍ତ ହେଲେ । ତାଙ୍କୁ ମୁକ୍ତ ଦେବାପାଇଁ ଭାରତର ଚାରିଆଡ଼େ ଆନ୍ଦୋଳନ ଲାଗିଲା । ଦୀର୍ଘ ୩ ବର୍ଷ ପରେ ସରକାର ବିନାସର୍ତ୍ତରେ ସୁଭାଷଚନ୍ଦ୍ରଙ୍କୁ ମୁକ୍ତ

ଦେଲେ । ସେତେବେଳକୁ ଚିତ୍ତରଞ୍ଜନ ଦାସ ସ୍ୱର୍ଗାରୋହଣ କରିଥିଲେ; ତେଣୁ ବଙ୍ଗଳାର ଦାୟିତ୍ୱ ସୁଭାଷଚନ୍ଦ୍ରଙ୍କ ଉପରେ ପଡ଼ିଲା ।

ଇଂରେଜ ସରକାରଙ୍କ ସହିତ ସବୁ ପ୍ରକାର ସମ୍ପର୍କ ଛୁଟାଇ ଦେଇ ଭାରତରେ ପୂର୍ଣ୍ଣ ସ୍ୱାଧୀନତା ସ୍ଥାପନ କରିବା ସୁଭାଷଚନ୍ଦ୍ରଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସ୍ୱାଧୀନତା ଆନ୍ଦୋଳନରେ ମୁଖ୍ୟ ଅନୁଷ୍ଠାନ ରୂପେ କଂଗ୍ରେସ ଏ ଉଦ୍ଦେଶ୍ୟ ଗ୍ରହଣ କରୁ ବୋଲି ସେ ବରାବର ଚେଷ୍ଟା କରୁଥିଲେ । ମହାତ୍ମା ଗାନ୍ଧି ତାଙ୍କୁ ନିଜ ପୁଅପରି ସ୍ନେହ କରୁଥିଲେ । ସୁଭାଷ ମଧ୍ୟ ତାଙ୍କୁ ନିଜର ପିତା ପରି ଭକ୍ତି କରୁଥିଲେ; ତଥାପି ଏ ବିଷୟରେ ସେ ମହାତ୍ମା ଗାନ୍ଧିଙ୍କ ମତକୁ ମାନି ନେଲେ ନାହିଁ । ୧୯୨୯ରେ ଲାହୋରଠାରେ ଯେଉଁ କଂଗ୍ରେସ ଅଧିବେଶନ ହେଲା, ସେଥିରେ ସ୍ୱାଧୀନତା ପ୍ରସ୍ତାବ ଗୃହୀତ ହୋଇଥିଲା । ତା ପରବର୍ଷ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ ହେଲା । ଏ ସମ୍ପର୍କରେ ସୁଭାଷଚନ୍ଦ୍ରଙ୍କୁ ପୁଣି ଗିରଫ କରି ଅଟକ ରଖାଗଲା । ଜେଲରେ ଥିବା ସମୟରେ ପୁଣି ତାଙ୍କର ସ୍ୱାସ୍ଥ୍ୟ ଖରାପ ହେଲା । ଇଉରୋପ ମହାଦେଶରେ ଥିବା ଭିଏନାକୁ ଯାଇ ସେଠାରେ ଚିକିତ୍ସା ପାଇବା ପାଇଁ ଇଂରେଜ ସରକାର ତାଙ୍କୁ ଅନୁମତି ଦେଲେ । ଏହି ସମୟରେ ତାଙ୍କ ପିତାଙ୍କର ଶରୀର ଅତ୍ୟନ୍ତ ରୁଗ୍ଣ ହୋଇ ପଡ଼ିଲା । ତାଙ୍କୁ ଶେଷଥର ଦେଖା କରିବା ପାଇଁ ସେ ଭାରତକୁ ଫେରିଲେ; କିନ୍ତୁ ବମ୍ବେଠାରେ ପହଞ୍ଚିବା ପୂର୍ବରୁ ତାଙ୍କର ପିତା ସ୍ୱର୍ଗାରୋହଣ କରିଥିଲେ ।

ଇଂରେଜ ସରକାର ତାଙ୍କୁ ଭାରତରେ ରହିବାକୁ ଅନୁମତି ଦେଲେ ନାହିଁ । ତାହା ଫଳରେ ପୁଣି ତାଙ୍କୁ ଇଉରୋପ ଫେରି-ଯିବାକୁ ପଡ଼ିଲା । ଦେଶକୁ ଫେରିବା ପାଇଁ ଶ୍ରୀ ଜବାହରଲାଲଙ୍କଠାରୁ ବାର୍ତ୍ତା ପାଇ ସେ ପୁଣି ଫେରିଲେ; କିନ୍ତୁ ଭାରତରେ ଗୋଡ଼

ନ ଦେଇଥିବାରୁ ଇଂରେଜ ସରକାର ପୁଣି ତାଙ୍କୁ ଗିରଫ କରି ବନ୍ଦୀ କଲେ । ଏହା ଫଳରେ ଦେଶରେ ତୁମୁଳ ଆନ୍ଦୋଳନ ହେଲା । ୧୯୩୭ରେ ପୁଣି ସେ କାରାମୁକ୍ତ ହେଲେ, ତତ୍ପରେ ପୁଣି ତାଙ୍କୁ ଇଉରୋପକୁ ଫେରି ଯିବାକୁ ପଡ଼ିଲା ।

ହରିପୁରା କଂଗ୍ରେସରେ ସଭାପତି ନିର୍ବାଚିତ ହେବା ପରେ ପୁଣି ସେ ଦେଶକୁ ଫେରି ଆସିଲେ ଓ ବର୍ଷେ କାଳ କଂଗ୍ରେସ ଅନୁଷ୍ଠାନକୁ ଦୃଢ଼ଭାବରେ ପରିଚାଳନା କଲେ । ସେ ଚରମପନ୍ଥୀ ଥିଲେ । ଦେଶକୁ ହିଂସା ହେଉ ବା ଅହିଂସା ହେଉ ସ୍ୱାଧୀନତା ଲକ୍ଷ୍ୟରେ ପହଞ୍ଚାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । ତାହା ଫଳରେ କଂଗ୍ରେସରେ ମତଭେଦ ଘଟିଲା । ତା'ପର ବର୍ଷ ଯେତେବେଳେ ସେ ଦ୍ୱିତୀୟ ଥର ପାଇଁ କଂଗ୍ରେସ ସଭାପତି ପଦରେ ନିର୍ବାଚିତ ହେଲେ ସେତେବେଳେ ଅନୁଷ୍ଠାନ ଭିତରେ ଅଚଳ ଅବସ୍ଥା ସୃଷ୍ଟି ହେଲା । ଫଳରେ ସୁଭାଷଚନ୍ଦ୍ର କଂଗ୍ରେସ ଭିତରେ ଫରୱାର୍ଡ଼ ବ୍ଲକ ଗଢ଼ି ତାଙ୍କର ଆଦର୍ଶ ପ୍ରଚାର କରିବାରେ ଲାଗି ପଡ଼ିଲେ ।

କଲିକତାର ରାଜପଥରେ ଅନ୍ଧକୂପ ହତ୍ୟାର ସ୍ମୃତିସ୍ତମ୍ଭ ନିର୍ମାଣ କରି ଇଂରେଜ ସରକାର ଭାରତ ନାମରେ ମିଥ୍ୟା କଳଙ୍କ ବୋଳିଦେଲେ । ତାହା ଦୂର କରିବାପାଇଁ ଯେଉଁ ସତ୍ୟାଗ୍ରହ ଆରମ୍ଭ ହେଲା, ସେ ସେହି ଆନ୍ଦୋଳନର ଅଗ୍ରଣୀ ଥିଲେ; ତେଣୁ ଏଥର ମଧ୍ୟ ତାଙ୍କୁ କାରାରୁଦ୍ଧ ହେବାକୁ ହେଲା । ପରେ ଲୋକଶକ୍ତି ବଢ଼ିବାରୁ ସରକାର ସେ ସ୍ମୃତିସ୍ତମ୍ଭ ଉଠାଇଦେଲେ ଓ ସୁଭାଷଚନ୍ଦ୍ରଙ୍କୁ ଜେଲରୁ ଛାଡ଼ିଦେଲେ ।

ସେତେବେଳେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଥାଏ । ସୁଭାଷଚନ୍ଦ୍ରଙ୍କ ବିରୁଦ୍ଧରେ ଦୁଇଟି ମକଦ୍ଦମା ମଧ୍ୟ ଚାଲିଥାଏ । ଏପରି ସମୟରେ ମଧ୍ୟ ତାଙ୍କୁ ଘରେ ଅଟକବନ୍ଦୀ ପରି ରଖାଯାଇଥାଏ ।

ଗୁଇନ୍ଦୋଇଡ଼େ ପୋଲିସ ପହରା ରହିଥାନ୍ତି, ତଥାପି ୧୯୪୧ ମସିହା ଜାନୁୟାରୀ ମାସ ୨୬ତାରିଖ ଦିନ ସେ ତାଙ୍କର କଲିକତା ବାସଭବନରୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ ।

ସୁଭାଷଚନ୍ଦ୍ର ଛଦ୍ମବେଶରେ କାବୁଲରେ ପହଞ୍ଚିଲେ । ସେଠାରେ ନାନା ବାଧାବିଘ୍ନ ଅତିକ୍ରମ କରି ସେ ଜର୍ମାନୀରେ ପହଞ୍ଚିଲେ । ଭାରତର ସ୍ୱାଧୀନତା ସମ୍ପର୍କରେ ହିଟଲରଙ୍କ ସହିତ ଚୁକ୍ତି କରି ସେଠାରେ ସେ ଗୋଟିଏ ଆଜାଦହିନ୍ଦ୍‌ବାହିନୀ ଗଠନ କଲେ । ଏମାନେ ଇଂରେଜଙ୍କ ବିରୁଦ୍ଧରେ ଯୁଦ୍ଧ କରି ବୀରତ୍ୱ ପ୍ରଦର୍ଶନ କରିଥିଲେ । ଇତିମଧ୍ୟରେ ଏସିଆ ମହାଦେଶରେ ମଧ୍ୟ ଯୁଦ୍ଧ କରାଗଲା । ସୁଭାଷଚନ୍ଦ୍ର ବୁଡ଼ାଜାହାଜ ଯୋଗେ ଜର୍ମାନୀରୁ ବାହାରି ନାନା ବିପଦ ଅତିକ୍ରମ କରି ଜାପାନରେ ପହଞ୍ଚିଲେ ।

ଜାପାନରେ ଥାଇ ସେ ଆଜାଦ୍ ହିନ୍ଦ୍ ସରକାର (ସ୍ୱାଧୀନ ଭାରତ ସରକାର) ଗଠନ କଲେ । ଜାପାନ ସରକାର ମଧ୍ୟ ସ୍ୱାଧୀନ ଭାରତ ସରକାରକୁ ସ୍ୱୀକାର କଲା । ଏହିଠାରେ ପ୍ରଥମେ ସ୍ୱାଧୀନ ଭାରତର ତ୍ରିରଙ୍ଗ ପତାକା ଉଡ଼ିଥିଲା । ଜାପାନଠାରୁ ବର୍ମାକୁ ଆସି ସେ ଆଜାଦ୍ ହିନ୍ଦ୍ ସେନାବାହିନୀ ଗଠନ କଲେ । ଇଂରେଜଙ୍କ ବିରୁଦ୍ଧରେ ଯୁଦ୍ଧ କରିବାରେ ଏହି ବାହିନୀ ଯେଉଁ ତ୍ୟାଗ ଓ ବୀରତ୍ୱ ଦେଖାଇଛନ୍ତି, ତାହା ପୃଥିବୀ ଇତିହାସରେ ବିରଳ । ଆଜି ସ୍ୱାଧୀନ ଭାରତରେ ଯେଉଁ 'ଜୟହିନ୍ଦ୍' ଡାକ ରାଷ୍ଟ୍ରୀୟ ଧ୍ୱନି ରୂପେ ଗୃହୀତ ହୋଇଛି, ତାହା ଏହି ଆଜାଦ୍ ହିନ୍ଦ୍ ବାହିନୀର ଧ୍ୱନି । 'ଜନଗଣ ମନ' ତାଙ୍କ ଜାତୀୟ ସଙ୍ଗୀତ ଏବଂ 'ତ୍ରିରଙ୍ଗ ପତାକା' ତାଙ୍କର ଜାତୀୟ କେତନ ଥିଲା । ଆଜାଦ ହିନ୍ଦ୍ ବାହିନୀର ଡାକ ଥିଲା, "ଦିଲ୍ଲୀଚଲୋ" ରଣକ୍ଷେତ୍ରରେ ବ୍ରିଟିଶ ଓ ଆମେରିକା ସୈନ୍ୟଙ୍କୁ ଘଉଡ଼ାଇ ଆଜାଦ୍ ହିନ୍ଦ୍ ବାହିନୀ ଆସାମର ଇମ୍ଫାଲ ପର୍ଯ୍ୟନ୍ତ ମାଡ଼ି ଆସିଲେ ।

ନେତାଜୀ ସୁଭାଷଚନ୍ଦ୍ର ନିଜେ ରଣକ୍ଷେତ୍ରରେ ଥାଇ ଏ ଯୁଦ୍ଧ ପରିଚାଳନା କରୁଥିଲେ ।

'ଶତ୍ରୁନାଶ କରି ଭାରତକୁ ସ୍ୱାଧୀନ କରିବାକୁ ହେବ' ଏହି ଗୋଟିଏ ମାତ୍ର ଲକ୍ଷ୍ୟ ଦ୍ୱାରା ତାଙ୍କର ଜୀବନ ନିୟନ୍ତ୍ରିତ ହେଉଥିଲା ।

୧୯୪୫ ବେଳକୁ ଜର୍ମାନୀ ପରାଜିତ ହେଲା । ଆମେରିକା ପକ୍ଷ ହିରୋସୀମା ଓ ନାଗାସାକୀ ନାମକ ଜାପାନ ଦେଶର ଦୁଇଟି ବିଶାଳ ନଗର ଉପରେ ଆଣବିକ ବୋମା ପକାଇ ହଜାର ହଜାର ନିରୀହ ସ୍ତ୍ରୀ, ବୃଦ୍ଧ, ବାଳକଙ୍କୁ ହତ୍ୟା କଲେ । ତାହା ଫଳରେ ଜାପାନ ଆତ୍ମସମର୍ପଣ କଲା । ଆଜାଦ୍‌ହିନ୍ଦ୍ ବାହିନୀକୁ ମଧ୍ୟ ଆତ୍ମସମର୍ପଣ କରିବାକୁ ପଡ଼ିଲା । ଯୁଦ୍ଧ ବନ୍ଦ ହେଲା । ସୁଭାଷଚନ୍ଦ୍ରଙ୍କୁ ବନ୍ଦୀ କରିବା ପାଇଁ ବ୍ରିଟିଶ ଓ ଆମେରିକା ପକ୍ଷ ପ୍ରାଣପଣେ ଚେଷ୍ଟା କଲେ; କିନ୍ତୁ ତାଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ସେ ମୃତ କି ଜୀବିତ ଏ ପର୍ଯ୍ୟନ୍ତ ତାହାର ଠିକ୍ ପ୍ରମାଣ ମିଳୁନାହିଁ । ଆମ ଭାରତ ସରକାର ଇତିମଧ୍ୟରେ ଏ ବିଷୟରେ ଗୋଟିଏ ଅନୁସନ୍ଧାନ କମିଟି ବସାଇଥିଲେ । ଜାପାନ ଆଦି ଦେଶ ଭ୍ରମଣ କରି ନାନା ଅନୁସନ୍ଧାନ ପରେ ସେ କମିଟି ରିପୋର୍ଟ ଦେଲେ ଯେ ଉଡ଼ାଜାହାଜ ଯୋଗେ ଶ୍ୟାମ ଦେଶରୁ ଫର୍ମୋଜା ଆଡ଼କୁ ଆସୁଥିବା ସମୟରେ ସେଥିରେ ନିଆଁ ଲାଗିଯିବାରୁ ନେତାଜୀ ପ୍ରାଣ ହରାଇଥିଲେ ।

ସେ ଯାହାହେଉ, ସ୍ୱାଧୀନତା ସଂଗ୍ରାମର ଏକ ବିଜୟୀ ବୀର ଆଜ ଆମ୍ଭମାନଙ୍କ ଦେଶରେ ନାହାନ୍ତି । ସେ ଥିଲେ ଭାରତୀୟ ସ୍ୱାଧୀନତାର ଏକନିଷ୍ଠ ସାଧକ । ତାଙ୍କର ପ୍ରତିଭା ଯୁଗ ଯୁଗ ଧରି ଭାରତବାସୀଙ୍କୁ ଉଦ୍‌ବୁଦ୍ଧ କରିବ ।

---

ମୁଦ୍ରାକର—ଶ୍ରୀ କେଶବ ଚରଣ ରଥ, ପ୍ରକାଶ ପ୍ରିଣ୍ଟର୍ସ, କଟକ—୧